# ଯେସନେ
# କୀଟ
# ଉର୍ଣ୍ଣନାଭି

ରମେଶ ପ୍ରସାଦ ପାଣିଗ୍ରାହୀ



events

# ଯେସନେ
# କୀଟ
# ଉର୍ଣ୍ଣନାଭି

ରମେଶ ପ୍ରସାଦ ପାଣିଗ୍ରାହୀ



## ଉତ୍ସର୍ଗ

ମୋର ସାନଭାଇ
ନାଟ୍ୟକାର ଓ ନିର୍ଦ୍ଦେଶକ
ଶ୍ରୀ କୈଳାସ ପାଣିଗ୍ରାହୀ
ଏବଂ ତାଙ୍କ ପତ୍ନୀ
ବୀଣାଙ୍କ ହାତରେ...

ନାଟ୍ୟକାର

ଯେସନେ କୀଟ ଉର୍ଣ୍ଣନାଭି
ନିଜ ବଦନୁ ସୂତ୍ର ଭାବି ।
ଜାଲ ନିର୍ମାୟି ରାତ୍ର ମୁଖେ
ମଧ୍ୟେ ବିହରେ ଆତ୍ମ ସୁଖେ ।
ଏମନ୍ତେ ରାତ୍ରେ କ୍ରୀଡା କରେ
ସୂର୍ଯ୍ୟ ଉଦୟେ ତା' ସଂହାରେ
ଏରୂପେ ସୃଷ୍ଟି ଲୀଳା କରି
ସଂସାରେ ଖେଳେ ନରହରି ।

(ଜଗନ୍ନାଥ ଦାସ, ଭାଗବତ)



# ମୁଖବଂଧ

ଭାରତୀୟ ନାଟକର ଆରମ୍ଭରେ, ବିଶେଷତଃ ଭବଭୂତିଙ୍କ ନାଟକ ଗୁଡ଼ିକରେ ନଟ ଓ ନଟୀ କିମ୍ବା ସୂତ୍ରଧର ଆସି "ଏଇଟା ଅମୁକଙ୍କ ନାଟକ" ବୋଲି କହି ନାଟକର ଶ୍ରୀଗଣେଶ କରନ୍ତି । ନାଟକର କଥାବସ୍ତୁ କେଉଁ ପୁରାଣ, କେଉଁ ଶାସ୍ତ୍ର ତଥା କେଉଁ ଉତ୍ସରୁ ସଂଗୃହିତ, ସେ କଥା ମଧ୍ୟ ଦର୍ଶକମାନଙ୍କୁ ବୁଝେଇ ଦିଆଯାଏ । ଗ୍ରୀକ୍ ଦୁଃଖାନ୍ତ ନାଟକରେ କୋରାସ ବା ବୃନ୍ଦ ଅଭିନେତାମାନେ ଗୀତ ଗାଇ ନାଟକର ପ୍ରାକ୍ ସୂଚନା ଦେଇଯାଆନ୍ତି । ଏ ଗୁଡ଼ିକ ତିରସ୍କରଣ କରାଯିବାର ମାଧ୍ୟମ । ଏଇ ଧାରାର ମୁଖ୍ୟ ଆବେଦନ ଥିଲା ନାଟକର ବିଷୟ ବସ୍ତୁଟିକୁ ମୂଳରୁ ଯେପରି ବୁଝିବେ ଦର୍ଶକମାନେ । ରହସ୍ୟ, ଗୋପନୀୟ ଓ ଦୁର୍ବୋଧ ବୋଲି କିଛି ରହିବ ନାହିଁ ନାଟକ ଭିତରେ ।

ଆଜିକାଲି ତାର ଓଲଟା ହେଉଛି । ଆରମ୍ଭରୁ ନାଟକ ଏକ ପ୍ରବଳ ଉତ୍କଣ୍ଠାକୁ ଉପସ୍ଥାପିତ କରି କେବଳ ରହସ୍ୟ ଓ ଦୁର୍ବୋଧତାକୁ ସମ୍ବଳ କରି ପ୍ରଥମ ପନ୍ଦର ମିନିଟ୍ କଟେଇ ଦେଉଛି । ଓଡ଼ିଆରେ ୧୯୨୧ ମସିହାରେ ସେଇ ବିଖ୍ୟାତ "ନାଟ୍ୟକାରର ସଂଧାନରେ ଛ'ଟି ଚରିତ୍ର" ନାଟକଟି ମଂଚସ୍ଥ କରାଯାଇନାହିଁ । ମୋର "ଆତ୍ମଲିପି" ନାଟକ ଦେଖି କେହି କେହି ମତେ ପିରାଂଦେଲୋଙ୍କର ନାଟକ କଥା ମନେ ପକେଇ ଦେଇଥିଲେ । ଆଜିବି ସେମିତି ନାଟକ ଲେଖାହେଉଛି, ଯେମିତି କାଳିଚରଣ ୧୯୫୦ ମସିହାରେ ଲେଖୁଥିଲେ ।

ମଝିରେ ମଝିରେ ମୋର ଇଚ୍ଛା ହୁଏ ନାଟକ ସମ୍ପର୍କରେ ନାଟକ ଲେଖିବାକୁ । ସବୁବେଳେ ଉତ୍କଣ୍ଠା ଓ ଆବେଗକୁ ବଜାୟ ରଖି

ଦର୍ଶକମାନଙ୍କଠାରୁ ଗ୍ରୀନ୍‌ରୁମ୍ ଗୋପନୀୟ ରଖି ଆମେ ଯୋଉ ନାଟକ କରୁଛୁ, ସେଥିରେ ଦର୍ଶକମାନଙ୍କୁ ନାଟକ ବାଲା ଠକୁଛନ୍ତି ବୋଲି ସମସ୍ତେ ଭାବୁଛନ୍ତି । ଏଣୁ ଅପରହସ୍ୟିକରଣର ଆବଶ୍ୟକତା ଏଠାରେ ବେଶି । ଦର୍ଶକମାନଙ୍କୁ ରହସ୍ୟ ମୁକ୍ତ କରିବା ନାଟ୍ୟକାରର ପ୍ରଥମ ପ୍ରତିଶ୍ରୁତି ହେବା ଆବଶ୍ୟକ । ଏଣୁ ନାଟକ ସମ୍ପର୍କରେ ଅର୍ଥାତ୍ ନାଟକ ଲେଖାଯିବା ସମ୍ପର୍କରେ ନାଟକ ଲେଖିବା ନିହାତି ଆବଶ୍ୟକ । ନାଟକର ଆଂଗିକ ଯାହା, ଗଠନ ଶୈଳୀ ଯାହା, ତାହା ଯଦି ନାଟକର ବିଷୟବସ୍ତୁ ହୋଇଯାଏ, ତା'ହେଲେ କ୍ଷତି କ'ଣ ? ନାଟକଟା ଖାଲି ଗୋଟେ ଆଂଗିକ ବୋଲି ନାଟ୍ୟକାର ଆଗରୁ ଜାଣିଥାଏ ।

ଓଡ଼ିଶାରେ 'ଗପ' ଆଉ 'ଉପନ୍ୟାସ'କୁ ବାସ୍ତବତାର ପ୍ରତିଫଳନ ବୋଲି ଗ୍ରହଣ କରାଯାଏ । ମୁଁ ବୁଝିପାରେନି 'ଗପ'ଟେ ସତ କେମିତି ହେବ ? ଇଂରେଜୀ "ଫିକ୍‌ସନ୍"ଟା "ବାସ୍ତବ" ହବ କେମିତି ? ସାହିତ୍ୟରେ ଯେତେସବୁ ବିପ୍ଲବ ଆସେ- ସବୁ ଆସେ ବାସ୍ତବତାର ଆଳରେ । ନାଟକରେ ବର୍ଣ୍ଣନା କରିବା ପାଇଁ କେହି ଚରିତ୍ର ନଥାନ୍ତି ଉପନ୍ୟାସ ପରି । ତେଣୁ ମଝିରେ ମଝିରେ ନାଟ୍ୟକାର କୋଉ ଗୋଟାଏ ମୁଖ୍ୟ ଚରିତ୍ର ଭିତରେ ପଶି ନିଜ କଥା କହିଦିଏ । ସମୀକ୍ଷକମାନେ ସେଇଥିରୁ ନାଟକର ଫିଲସ୍‌ଫି, ନାଟକର ସାମାଜିକ ବାର୍ତ୍ତା/ଆଦର୍ଶ ଏବଂ ନାଟକର ବିଶ୍ୱଦର୍ଶନ ଇତ୍ୟାଦି ଖୋଜିଥାନ୍ତି ।

ଆଉ କିଛି ନାଟ୍ୟକାର ଅଛନ୍ତି ଯେଉଁମାନେ ପ୍ରସ୍ତାବନା, ଉପସ୍ଥାପନା, କ୍ରୋଡ଼ଦୃଶ୍ୟ, ନାଟକ ମଧ୍ୟରେ ନାଟକ, ସ୍ୱଗତୋକ୍ତି ଜନାନ୍ତର ଇତ୍ୟାଦି ମାଧ୍ୟମରେ ନିଜ କଥା କୁହନ୍ତି- ନାଟକ କଥା କୁହନ୍ତି । ଏଗୁଡ଼ିକୁ "ଆତ୍ମ-ସଚେତନ ଶୈଳୀ" ବୋଲି ଚିହ୍ନଟ କରାଯାଏ । ପ୍ରଥମ ବିଶ୍ୱଯୁଦ୍ଧ ଶେଷ ଓ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭର ମଧ୍ୟବର୍ତ୍ତୀ କାଳରେ ଆଧୁନିକତା ନାମରେ ଏପରି "ଆତ୍ମସଚେତନ" ନାଟକ ପ୍ରଚୁର ଲେଖା ହୋଇଚି ୟୁରୋପର ସବୁ ଭାଷାରେ । ଓଡ଼ିଶାରେ କିଛି ହୋଇପାରିଲା ନାହିଁ ।

ତେଣୁ ଆମ ଭାଷାରେ ଏପରି ଦୃଷ୍ଟାନ୍ତ ନାହିଁ । କେବଳ "ଶବ୍ଦଲିପି" ନାଟକରେ ମନୋରଞ୍ଜନ ଦାସଙ୍କ ଉପୋଦ୍‌ଘାତକ ଚରିତ୍ର ମଞ୍ଚ ଉପରେ ପ୍ରବେଶ କରିବା ମାତ୍ରେ ଗୋଟିଏ କାଳ୍ପନିକ ଟୋକେଇରୁ ଶବ୍ଦ ଆଣି କାଳ୍ପନିକ

ନାଟ୍ୟ କ୍ଷେତ୍ର ଉପରେ ବୁଣି ଦେଇଯାଉଛି । ଅନ୍ୟଥା ନାଟକ ସମ୍ପର୍କରେ ନାଟକ ଲେଖିବାର ପ୍ରୟାସ ଆମ ନାଟ୍ୟକାରମାନେ କରିନାହାନ୍ତି । ଏଣୁ ନାଟକରେ ମଞ୍ଚମାୟା କ'ଣ ଓ ବାସ୍ତବତା ଠାରୁ ତାହା କିପରି ଭିନ୍ନ, ସେ ସମ୍ପର୍କରେ ଆଲୋଚନା କରାଯାଏ ନାହିଁ ।

କିନ୍ତୁ ଯୁଗଯୁଗ ଧରି ବାସ୍ତବବାଦ ଧ୍ୱଂସ ହୋଇଯାଉଛି । ଅତି ବାସ୍ତବବାଦ ବା ରହସ୍ୟବାଦର ପାଦତଳେ । ଏଥିପାଇଁ ନାଟକରେ ଭୌତିକତା ଅପେକ୍ଷା ଅତି ଭୌତିକତାକୁ ଅଗ୍ରାଧିକାର ଦିଆଯାଏ । ଦକ୍ଷିଣ ଭାରତରେ ନାଟ୍ୟଦଳ ଗୁଡିକ ସେଥିପାଇଁ ପୌରାଣିକ ନାଟକ କରନ୍ତି । କିମ୍ଵା ପୌରାଣିକ କାହାଣୀ ନେଇ ପ୍ରସିଦ୍ଧ ନାୟକମାନଙ୍କର ଅଲୌକିକ କ୍ରିୟା ସବୁକୁ ଆଧୁନିକ ଢାଞ୍ଚାରେ ବିଶ୍ଳେଷଣ କରନ୍ତି । ମୋଟ ଉପରେ ବାସ୍ତବବାଦର ମୂଳଦୁଆ ଶକ୍ତ ନୁହେଁ ବୋଲି ଜଣେଇବା ପାଇଁ ସେମାନେ ବାସ୍ତବବାଦ ଉପରେ କମ୍ ପ୍ରାଧାନ୍ୟ ଦେଇ ଅତି ବାସ୍ତବବାଦ ଉପରେ ବେଶୀ ଗୁରୁତ୍ୱ ଦେଉଛନ୍ତି ।

ମୋର "ଯେସନେ କୀଟ ଉଣ୍ଡନାଭି"ର ନାଟ୍ୟକାର ବାରମ୍ବାର ନିଜ ସାମାଜିକ ଭୂମିକା ପାଖରୁ ଅଦୃଶ୍ୟ ହେଇଯାଉଛନ୍ତି ବୋଲି ତାଙ୍କ ପତ୍ନୀ ସୁହାସିନୀ ଅଭିଯୋଗ କରୁଛନ୍ତି ।

ଯେଉଁ ସମାଜନିଷ୍ଠ ନାଟ୍ୟକାରମାନେ ନିଜର ସାମାଜିକ ଭୂମିକା ମଧ୍ୟରେ ବିଦା ହୋଇ କେବଳ ପିନ୍ଧିଥିବା ମୁଖାକୁ ଚରିତ୍ର ବୋଲି ଚିତ୍ରିତ କରନ୍ତି ସେମାନେ ଆସ୍ତେ ଆସ୍ତେ "ମୁଖା"କୁ ଚରିତ୍ର ବୋଲି ଭାବିବା ବନ୍ଦ କଲେଣି । ମୁଖାର ଅନ୍ତରାଳରେ ଥିବା ଚରିତ୍ର-ସତ୍ତାଟିର ଅନୁଧ୍ୟାନ କରିବାକୁ ଇଚ୍ଛା ପ୍ରକଟ କରି ଦର୍ଶନ ଶାସ୍ତ୍ରର "ଆତ୍ମା" ଓ ମନୋବିଜ୍ଞାନର "ଅନ୍ତଃସତ୍ତା" ପାଖରେ ପହଞ୍ଚି ପାରିଲେଣି । ନାଟକ ଭିତରେ ଦର୍ଶନ ଶାସ୍ତ୍ର ପୁରେଇବାକୁ ମତେ ଡର ମାଡେ । ବିଚରା ଦର୍ଶକ କିଛି ବୁଝିପାରିବେ ନାହିଁ ।

ଏଇ ନାଟକରେ ଚରିତ୍ର ମାନଙ୍କର ପରିଚୟ ଖୋଜିବା ଏକ ଜଟିଳ ବ୍ୟାପାର । ଯେଉଁ ଅଭିନେତାଟି ନିର୍ଦ୍ଦିଷ୍ଟ ଭୂମିକାରେ ଅଭିନୟ କରେ ତାହା ଦ୍ୱି-ସ୍ତରୀୟ । ପ୍ରଥମତଃ, ସେ ଜଣେ ଅଭିନେତା । ଦ୍ୱିତୀୟ ସ୍ତରରେ ସେ ଗୋଟିଏ ଚରିତ୍ରରେ ଅଭିନୟ କରେ । ମାନସିକ ସ୍ତରରେ ଆମେ ସମସ୍ତେ ଏ

ବିଷୟରେ ସଚେତନ । କିନ୍ତୁ ନାଟକୀୟ ମାୟା ଦ୍ୱାରା ଅଭିଭୂତ ହୋଇ ରହିଲାବେଳେ ଆମେ ଲୋକଟା "ରୋଲ୍" କରୁଛି ବୋଲି ଜାଣିବା ବନ୍ଦ କରିଦେଇ ଭାବୁ ଇଏ ଯୋଉ ଚରିତ୍ରରେ ରୋଲ୍ କରୁଛି, ତାହା ନାଟକରେ ଥିବା କାଳ୍ପନିକ ଚରିତ୍ର ନୁହେଁ । ସତସତିକା ଆମର ଜଣାଶୁଣା ଅଭିନେତାଟିଏ ।

ଜାଁ ଜେନେ (Jean Genet) ବୋଲି ଜଣେ ପ୍ରସିଦ୍ଧ ଫରାସୀ ନାଟ୍ୟକାର ଥିଲେ । The Maids ବୋଲି ତାଙ୍କର ଗୋଟିଏ ପ୍ରସିଦ୍ଧ ନାଟକ ଅଛି । ସେଥିରେ ଦୁଇଟି ଚରିତ୍ର- ମାଲିକାଣୀ ଓ କାମବାଲି । କାମବାଲୀଟା ମାଲିକାଣୀ ଭୂମିକାରେ ଅଭିନୟ କରୁଛି ଓ ମାଲିକାଣି କାମବାଲୀ ହୋଇଯାଉଛି । ବେକେଟ୍‌ଙ୍କ Waiting for Goelot ନାଟକରେ Godot ଙ୍କ ପାଇଁ ସମସ୍ତେ ଅପେକ୍ଷା କରିଛନ୍ତି । ତା' ଭିତରେ ଅଛନ୍ତି Didi, Gogo । ବେକେଟ୍ କିନ୍ତୁ ସବୁବେଳେ ତାଙ୍କ ଦର୍ଶକମାନଙ୍କୁ ଚେତେଇ ଦେଉଛନ୍ତି ଯେ Didi ଓ Gogo କେବଳ Godot ଙ୍କୁ ଅପେକ୍ଷା କରିଥିବା ଚରିତ୍ର ନୁହନ୍ତି । ସେମାନେ ଅଭିନେତା ମଧ । ସେମାନେ ଖାଲି ଅପେକ୍ଷା କରୁନାହାନ୍ତି । ଅପେକ୍ଷା କରିବାର ଅଭିନୟ ମଧ କରୁଛନ୍ତି । ଆମ ଓଡ଼ିଆ ନାଟ୍ୟକାର ଏ ବିଷୟରେ ଭାବନ୍ତିନାହିଁ ।

ଏଠାରେ ନାଟ୍ୟମାୟା ଅଛି ଓ ବାସ୍ତବତା ମଧ ଅଛି । ଏକାସାଙ୍ଗରେ ନାଟ୍ୟ ମାୟା ଓ ବାସ୍ତବତା ଅଛନ୍ତି । ହାତ ଧରାଧରି ହେଇ ଅଛନ୍ତି । ଦର୍ଶକ କେମିତି ଗ୍ରହଣ କରୁଛି ତା'ଉପରେ ନିର୍ଭର କରେ । ଏ ସବୁ ଲେଖିବାର ଅର୍ଥ- ନାଟକ ନିଜେ ଦର୍ଶକମାନଙ୍କ ସାଙ୍ଗରେ ଲୁଚକାଳି ଖେଳ ଖେଳୁଛି ।

ଦକ୍ଷିଣ ଓଡ଼ିଶାରେ ଲୋକେ "ନାଟକ ଖେଳନ୍ତି" । (ନାଟକ "କରନ୍ତି" ନାହିଁ) । ନାଟକବାଲାଙ୍କ ସାଙ୍ଗରେ ଦେଖାହେଲେ ପଚାରିବେ ! "ତମର ନୂଆ ନାଟକ କେବେ ଖେଳୁଛ" ? "ଯୋଉ ନାଟକଟା ଖେଳିଲ- ସେଇଟା ବଢ଼ିଆ ହେଲା"- ଇତ୍ୟାଦି ସେମାନଙ୍କ କଥାର ମର୍ମ ମତେ ଅନେକ ଦିନ ପରେ ଜଣାପଡିଲା, ଯେଉଁଦିନ ମୁଁ ଜେମ୍‌ସ ଜଏସ୍‌ଙ୍କୁ ପଢ଼ିଲି । ଜଏସ୍ କହିଲେ ଯେ ସେ ତାଙ୍କ ଉପନ୍ୟାସମାନଙ୍କରେ ଏମିତି ରହସ୍ୟ, କୁହେଳି ଓ ପ୍ରହେଳିକା ଖୁନ୍ଦି

ଦେଇଛନ୍ତି ଯେ ସାହିତ୍ୟ ପଢ଼ାଉଥିବା ପ୍ରଫେସର ଦଳ ଆଗାମୀ ଶହେବର୍ଷ ଯାଏଁ ସେଗୁଡିକର ଟୀକା ଲେଖୁଥିବେ । ଶ୍ରେଣୀଗୃହ ମାନଙ୍କରେ ଠିଆ ହେଇ ଭଳିକିଂ ଭଳିକି ଅନ୍ୱୟ କରୁଥିବେ । କିନ୍ତୁ ଅସଲ ଅର୍ଥଟା ଜଣାପଡିବ ନାହିଁ ।

ଆୟାରଲ୍ୟାଣ୍ଡର ନୋବେଲ ପୁରସ୍କାର ପାଇଥିବା ଏହି ଔପନ୍ୟାସିକଙ୍କ ଥଟ୍ଟାଳିଆ ସ୍ୱର ସେଦିନ ମତେ କ୍ଷୁବ୍ଧ କରିଥିଲା । ମୁଁ ଜାଣିନଥିଲି ବଡ ବଡିଆମାନେ ଜାଣି ଜାଣି ଲେଖାଟିକୁ ଏମିତି ଦୁର୍ବୋଧ କରିଦିଅନ୍ତି । ସାହିତ୍ୟ ବହି ଓ ପାଠକ ମଧ୍ୟରେ ଥିବା ଗୁପ୍ତ ସ୍ଥାନରେ ଅର୍ଥ ଲୁଚକାଳି ଖେଳେ । କେତେବେଳେ ଲାଗେ ଅର୍ଥ ବୁଝାପଡିଗଲା, କିନ୍ତୁ ବିଚରା ଲେଖକ ନିଜେ ହିଁ ଜାଣେନାହିଁ ସେ କ'ଣ ଲେଖୁଛି । ଯେମିତି ଲାଗେ ହରପ୍ରସାଦ ଦାସଙ୍କ କବିତା । ଏହି ଲେଖକ ବାରମ୍ୱାର ଅର୍ଥ ଖୋଜିବାକୁ ଯାଇ ଆବିଷ୍କାର କରିଛି ଯେ ନିଜେ ଲେଖକ ଜାଣିନାହାନ୍ତି କ'ଣ କହିବାକୁ ସେ ଚାହୁଁଛନ୍ତି । ନାଟକରେ ଏମିତି ହେଲେ ଦର୍ଶକ ସିଧା ମଞ୍ଚ ଉପରକୁ ଉଠିବେ ଓ ନାଟ୍ୟକାରକୁ ଖୋଜି ବାଡେଇବେ ।

ଏଇ ନାଟକରେ ଚରିତ୍ର ଗୁଡାକ ଯେମିତି ପରସ୍ପରଙ୍କ ସହିତ ଖେଳୁଛନ୍ତି ସେମିତି ମନେହେବ । ମନେହେବ ଯେମିତି ନାଟ୍ୟକାର ଜାଣିଶୁଣି, ଯତ୍ନଶୀଳ ଭାବରେ ଏମିତି ସମ୍ପର୍କ ସୃଷ୍ଟି କରୁଛନ୍ତି । ହେଇପାରେ ଏହା ଏକ ରଣ କୌଶଳ । କାରଣ ପିଲାମାନେ କୌଶଳ ଶିଖିବା ପାଇଁ ଖେଳନ୍ତି । Coallois ଓ Huijinga ନାମକ ଦୁଇଜଣ ସମୀକ୍ଷକ ନାଟକର ଏଇ କ୍ରୀଡାତ୍ମକତା ସମ୍ପର୍କରେ ଚାରି/ଛଅଟି କଥା କହିଛନ୍ତି । ସେଗୁଡିକ ଏଠାରେ ଦରକାର ହେବ ।

(କ) ସ୍ୱାଧୀନତା ମିଳେ : କ୍ରୀଡାରେ ଯୋଗ ଦେଉଥିବା ବ୍ୟକ୍ତି ପ୍ରଚୁର ସ୍ୱାଧୀନତା ପାଏ । ତେଣୁ ବାରମ୍ୱାର ସେ ଖେଳ ପଡିଆକୁ ଚାଲିଯାଏ ।

(ଖ) ସମୟ ଓ ସ୍ଥାନ ଦ୍ୱାରା ଖେଳ ଓ ଖେଳାଳୀ ଉଭୟେ ଆବଦ୍ଧ । ନାଟକଟି ପ୍ରାକ୍ ନିର୍ଦ୍ଧାରିତ ସମୟ ଓ ସ୍ଥାନ ଦ୍ୱାରା ଚିହ୍ନିତ ହୋଇଥାଏ ।

(ଗ) ଅନିର୍ଦ୍ଦିଷ୍ଟ : କିଏ ଜିତିବ ଓ କେମିତି ଜିତିବ- ସେଇଟା କାହାକୁ ଜଣାନଥାଏ । ଖେଳ ହୁଏ ଦୁଇ ଦଳ ଭିତରେ । କିଏ ଜିତିବ ଓ କିପରି ଜିତିବ କେହି ଜାଣିନଥାନ୍ତି ।

(ଘ) ଖେଳ ଦ୍ୱାରା କିଛି ଉତ୍ପାଦନ ହୁଏନାହିଁ । କିନ୍ତୁ ଜିତିବା ହାରିବା ଲାଗି ରହିଥାଏ ।

(ଙ) କ୍ରୀଡା ନିୟମ ଦ୍ୱାରା ପରିଚାଳିତ ହୁଏ । ଏଗୁଡିକ ସାଧାରଣ ନିୟମ ନୁହନ୍ତି । ପ୍ରତ୍ୟେକ ଖେଳର ପରିଚାଳନା ପାଇଁ ଅଲଗା ନିୟମ ଅଛି । ନାଟକ ପାଇଁ ଅଲଗା ନିୟମ ଅଛି ।

(ଚ) ପ୍ରତି କ୍ରୀଡାର ଅନ୍ତରାଳରେ ଆଉ ଗୋଟିଏ ବାସ୍ତବତା ଅଛି ବୋଲି ଧାରଣାଟିଏ ଥାଏ । ଏପରିକି ପ୍ରତି ଅବାସ୍ତବତା ଅନ୍ତରାଳରେ ମଧ୍ୟ ଗୋଟିଏ ଉଚ୍ଚ ବାସ୍ତବତା ଅଛି ବୋଲି କ୍ରୀଡାବିତ୍‌ମାନେ ବିଶ୍ୱାସ କରନ୍ତି । ସାହିତ୍ୟ/ନାଟ୍ୟ କ୍ରୀଡାରେ ସଂଶ୍ଳିଷ୍ଟ ଥିବା ଲୋକେ ସହଜରେ ଏପରି ବିଶ୍ୱାସ ପୋଷଣ କରିଥାଆନ୍ତି ।

ଏହି ଦୃଷ୍ଟିରୁ ନାଟ୍ୟକାର ଓ ତାଙ୍କ ସ୍ତ୍ରୀଙ୍କ ମଧ୍ୟରେ ଯାହାସବୁ ଘଟେ ସେଗୁଡିକ କୌଣସି କାହାଣୀର ଅଂଶ ନୁହେଁ । ନାଟ୍ୟକାର ମଝିରେ ମଝିରେ ଅଦୃଶ୍ୟ ହୋଇଯାଉଥିବା ବିଶ୍ୱାସଟି ଗୋଟିଏ କ୍ରୀଡା । ଓଝା ପାଖକୁ ଯାଇ ସେ ଭଲ କରିଦେଇ ପାରିବେ ବୋଲି ବିଶ୍ୱାସ ଅଛି ତାଙ୍କର ।

ନାଟ୍ୟ କ୍ରୀଡାର ସେମିତି କିଛି ଅଲଗା ନିୟମ ଅଛି ବୋଲି ମୋର ଧାରଣା ନାହିଁ । ନାଟ୍ୟକାର ଜାଣି ଜାଣି ଅଦୃଶ୍ୟ ହୋଇଯାଉଛନ୍ତି ବୋଲି ତାଙ୍କ ସ୍ତ୍ରୀ ଭାବୁଥିଲେ ସୁଦ୍ଧା ସେ ଚେତନାର ଲୁଚକାଳି ଖେଳରୁ ଦ୍ୱିସ୍ତରୀୟ ଆନନ୍ଦ ପାଉଛନ୍ତି । ନାଟକ ଲେଖିବା ଲୋକଟା ଅଦୃଶ୍ୟ ହେଇ କୋଉଠିକି ଯିବ ? ଚେତନାର କୌଣସି ଅଗମ୍ୟ ଉପତ୍ୟକା ଭିତରକୁତ ? ସେଇଠି ଦୃଶ୍ୟ ବିମ୍ବଟିଏ ପ୍ରତିଫଳିତ ହେଲେ ଏଇଠି ଦୃଶ୍ୟଟିଏ ହେବ ନାଟକ ପାଇଁ । କିନ୍ତୁ ଯାହାଇଚ୍ଛା ତାହା ଲେଖିବା ପାଇଁ ନାଟ୍ୟକାର ସୁବିଧା ପାଇବ ନା ତାକୁ ଗୋଟେ କାହାଣୀ ଭିତରେ ପଶିବାକୁ ହେବ ଚରିତ୍ର ହୋଇ ? ସିଏ ମରିବାକୁ ହେବ ନା ବଞ୍ଚିବାକୁ ହେବ ? ଏସବୁ ନାଟ୍ୟକାର ଚରିତ୍ର ନିଜେ ନିଷ୍ପତ୍ତି ନେବ ନା ନାଟ୍ୟକାର ଯେମିତି କହିବ ସେମିତି କରିବ ? ଯଦି ଚରିତ୍ର ଭାବି ନାଟ୍ୟକାରକୁ ଏ ସୁଯୋଗ ଦିଆଯାଏ, ତା'ହେଲେ ସିଏ ଆସି ନାଟକର କଳାତ୍ମକ ଗଠନ ଭିତରେ ପଶି ବିଭ୍ରାଟ କରିବ । ଚରିତ୍ର ମୁକ୍ତ ହେଲେ

ଆଦୌ ତାକୁ ସମ୍ଭାଳି ହେବନାହିଁ । ନାଟକର ଗଠନ ଶୈଳୀକୁ ପ୍ରଥମେ ବୁଝିବାକୁ ପଡିବ । ଖାଲି ନାଟ୍ୟକାର କାହିଁକି, ପ୍ରତ୍ୟେକ ସୃଜନାତ୍ମକ ନିର୍ମାତା ଏପରି ଦ୍ୱନ୍ଦ୍ୱରେ ପଡିଛନ୍ତି । ଦ୍ୱନ୍ଦ୍ୱରେ ନ ପଡିଲେ ମଧ ଦ୍ୱନ୍ଦ୍ୱର ସୀମା ଭିତରକୁ ପଶି ଯାଇଛନ୍ତି । ତେଣୁ ନାଟ୍ୟକାର ଶେଷ ଦୃଶ୍ୟରେ ବଞ୍ଚିବ ନା ମରିବ ତାର ନିଷ୍ପତ୍ତି ନେଇ ପାରିବ ନାହିଁ । କଣ କରିବ ସେ କଥା କହିବ ନାଟକର ଗଠନ ଶୈଳୀ ।

ନିଷ୍ପତ୍ତି ଚରିତ୍ର ନେବ, ନା ନାଟକର "ଫର୍ମ" ବା ଗଢ଼ଣ ଏପରି ଏକ ନିଷ୍ପତ୍ତିକୁ ଜନ୍ମ ଦେବ ତାହା ଆମର ବକ୍ତବ୍ୟ ନୁହେଁ । ପ୍ରଥମ କଥା ହେଲା ନିଷ୍ପତ୍ତି ନେବାଟା ଗୋଟିଏ କଳାତ୍ମକ କ୍ରୀଡା । ଏ କ୍ରୀଡାରେ ଭାଗ ନେବାକୁ ଯାଇ ନାଟ୍ୟକାର ମରିବା ଅଭିନୟ କରିବ । ପୁଣି ବଞ୍ଚିଯିବ ! ଯେଉଁ ସୃଜନାତ୍ମକ ଦ୍ୱନ୍ଦ୍ୱ ଉତ୍ପନ୍ନ ହେବ ତାହାର ପ୍ରତିନିଧିତ୍ୱ କରିବେ ପତ୍ନୀ ସୁହାସିନୀ ।

ଜଣେ ନାଟ୍ୟକାର ତାଙ୍କ ନାଟକର ଭାବକଳ୍ପକୁ କେଉଁ କେଉଁ ଦୃଶ୍ୟକଳ୍ପ ଦ୍ୱାରା ବିମ୍ବିତ କରିବେ ତାହାହିଁ ଚିହ୍ନଟ କରିବ ନାଟକର କେଉଁ ପ୍ରକାର କ୍ରୀଡା ଖେଳାଯିବ । ଏହି ନାଟକରେ ଅରବିନ୍ଦ ଅରିନ୍ଦମକୁ ମାରିଦେଲା ପରେ ଅରିନ୍ଦମ ପୁଣି ଉଠି ଆସିବା ଦୃଶ୍ୟଟି ଚିହ୍ନିତ ହେଉଛି ଗୋଟେ କ୍ରୀଡା ରୂପରେ । ଦର୍ଶକ ବିଶ୍ୱାସ କରୁନାହିଁ ନାଟ୍ୟକାରଙ୍କ ମୃତ୍ୟୁ । ତେଣୁ ଏହାର ନାଟ୍ୟାୟନ ବିଶ୍ୱାସନୀୟ ନୁହେଁ ।

କିନ୍ତୁ ବିଶ୍ୱାସନୀୟ କରିବା ପାଇଁ ବିଭିନ୍ନ କୌଶଳର ଆଶ୍ରୟ ନିଆଯାଇଛି । ଅନ୍ୟ ଭାଷାରେ କୁହାଯାଉଛି ଯେ ଆମେ କୌଣସି ସତ ସତିକା ଖେଳରେ ସତସତିକା ମୃତ୍ୟୁ ଦେଖାଉନାହୁଁ । ଗୋଟାଏ ନାଟକ ପରିବେଷଣ କରୁଛୁ । ଏ ସମ୍ପର୍କରେ ଚରିତ୍ରମାନେ କେବଳ ନିଜ ନିଜ ଭିତରେ କଥାବାର୍ତ୍ତା ହେଉନାହାନ୍ତି- ମଝିରେ ମଝିରେ ଦର୍ଶକମାନଙ୍କୁ ମଧ ଏ ସମ୍ପର୍କରେ ସୂଚନା ଦିଆଯାଉଛି । ସିଧା ସଳଖ ।

ଏହା ଫଳରେ ନାଟକର ଗନ୍ଧାଣୁ ନଷ୍ଟ ହେଉଛି । ଚରିତ୍ରର ଅବଶିଷ୍ଟ ବିଶ୍ୱାସ ଯୋଗ୍ୟ ଅଂଶ ମଧ ନଷ୍ଟ । ଏହା ଏକ କ୍ରୀଡା । ନିଜ ପରିଚୟ ଘୋଡେଇ ରଖୁ ରଖୁ ଖୋଲିଦେବା ପ୍ରକ୍ରିୟା । ଅବଶ୍ୟ ଏ କଥା ସତ ଯେ

ଏପରି ପରୀକ୍ଷା ଓଡ଼ିଆ ସାହିତ୍ୟରେ ହୋଇନାହିଁ । (ଏଇଟା ବହି ବିକ୍ରୀ ବିଜ୍ଞାପନ ନୁହେଁ, କୋଉଠି ଥିଲେ ଦେଖାଇ ଦିଅନ୍ତି)

ଏମିତି ଚରିତ୍ର ଓଡ଼ିଆ ସାହିତ୍ୟରେ ଗଢ଼ାଯାଇନି । ମୁଁ ଏକଥାଟାକୁ Peter Hutchinson ଙ୍କ ଭାଷାରେ କହିବି the characters reveal themselves as pure inventions, the plot as fantasy, The characters names and indvidual keywords as anagrams, signals to the reader or humorous constructs, all this within- or rather against- the traditional / dramatic form, (Hutchinson, P.33)

ସିଧା ସଳଖ କହିବାକୁ ଗଲେ ଏଠାରେ ମୁଁ 'ବାସ୍ତବ ବାଦ'କୁ ଥଟ୍ଟା କରୁଛି । ବାସ୍ତବବାଦ ବୋଲି କହି ଦୁନିଆକୁ ଭୂତ ବୋଲି ଭାବୁଛି । ଯେତେଦିନ ଆମେ ସେମାନେ କହୁଥିବା କଥାକୁ ସତ ବୋଲି ଭାବି ବିଶ୍ୱାସ କରୁଥିବା, ସେତେଦିନ ସେମାନେ ନାଟକ କରୁଛନ୍ତି ବୋଲି କହିବେ ନାହିଁ । ସେମାନେ ଅସ୍ଥିର ବା ଅନିର୍ଦ୍ଦିଷ୍ଟ ଭାବେ ଯାହା କୁହନ୍ତି, ତାହାହିଁ ନାଟକୀୟ ହୋଇଯାଏ । ମନୋରଞ୍ଜନ ଦାସଙ୍କ ନାଟକରେ ଗୋଟିଏ ପୂର୍ଣ୍ଣବାକ୍ୟକୁ ତିନି ଚାରିଜଣ ଭାଗବାଣ୍ଟି କୁହନ୍ତି । ଏହାକୁ ସଂଳାପ କ୍ରୀଡା କୁହାଯାଏ ।

ବାରମ୍ବାର ଅଦୃଶ୍ୟ ହେଉଛନ୍ତି ବୋଲି ଭାବିବା, ମୁଣ୍ଡରେ ଚିନ୍ତା ବଢୁଥିବା ଯୋଗୁଁ ଗୋଟେ ଦରଓ୍ୱାନ ରଖିବା ଇତ୍ୟାଦି ଏହି କ୍ରୀଡାତ୍ମକତାର ଦୁଇଟି ଉଦାହରଣ । ଶେଷ ଦୃଶ୍ୟରେ ନାଟ୍ୟକାରର ମୃତ୍ୟୁ ସମ୍ପର୍କରେ ଅନିର୍ଦ୍ଦିଷ୍ଟ ସଂଳାପ ନାଟକର କ୍ରୀଡାତ୍ମକତାକୁ ପ୍ରୋତ୍ସାହନ ଦେଇଛି । ଆମ ସାହିତ୍ୟରେ Meta theater ନଥିଲା । ଏଠାରେ ନାଟକ ସମାଜର ଦର୍ପଣ ନୁହେଁ । କେବଳ ବାସ୍ତବବାଦ ଦ୍ୱାରା ଏଇ ନାଟକର ଶୈଳୀକୁ ଭେଦ କରିପାରିବ ନାହିଁ ସମୀକ୍ଷକ । ପ୍ରଥମେ Leonel Abel ଏଇ ଶବ୍ଦଟିକୁ ତିଆରି କରିଥିଲେ ଓ Meta Theater ବୋଲି ଖଣ୍ଡେ ବହି ଲେଖିଥିଲେ । ତଥାପି ଏପର୍ଯ୍ୟନ୍ତ ନାଟକ ମଞ୍ଚାୟନକୁ କେନ୍ଦ୍ରକରି ଯେଉଁ ନାଟକ ଲେଖାଯାଇଛି ତାକୁ Meta theater ଆଖ୍ୟା ଦିଆଯାଉଛି । ଗ୍ରୀକ୍ ଭାଷାରେ Meta ଶବ୍ଦର ଅର୍ଥ ଉର୍ଦ୍ଧ୍ୱରେ । "ନାଟକ-ଭିତରେ-ନାଟକ"

ଥିଲେ ମଧ୍ୟ "ମେଟା ଥିଏଟର୍" କୁହାଯାଏ । Stuart Davis ପରବର୍ତ୍ତୀ ସମୟରେ ଲେଖିଛନ୍ତି "Meta Theater is a convenient name for the quality or force in a play which challenges theater's claim to be simply realistic- to be nothing but a mirror in which we view the actions and sufferings of characters like ourselves, suspending our disbelief in their reality. Meta theater begins by sharpening our awareness of the unlikeness of life to dramatic art; it may end by making us aware of life's uncanny likeness to art or illusion by calling attention to the strangeness, artificiality, illusoriness, or arbitrariness- in short the theatricality - of the life we live, it makes those frames and boundaries that conventional dramatic realism would hide, (Stuart Davis, Shakeopeare class at Cornell wniversity, Spring, 1999-1)

ଓଡ଼ିଆ ସାହିତ୍ୟରେ ମେଟା ଥିଏଟର୍ ନଥିଲା । ଏବେ ତିଆରି ହୋଇନାହିଁ । ୧୯୭୬ ମସିହାରେ ଲିଖିତ ମୋର 'ଆମ୍ବଲିପି' ନାଟକରେ ମଧ୍ୟ 'ମେଟାଥିଏଟର୍'ର ଉପାଦାନ ଥିଲା । ଆମର ସମାଲୋଚକମାନେ ଧରିପାରିନଥିଲେ । ମୋଟାମୋଟି ଦୁଇପ୍ରକାର ସାହିତ୍ୟ ମିଳୁଛି । 'ସାଦୃଶ୍ୟ' ଥିବା ସାହିତ୍ୟ ଓ 'ଭିନ୍ନତା' ଥିବା ସାହିତ୍ୟ ।

ପୁରୁଣା ସାହିତ୍ୟ ଓଲଟାଇ କିମ୍ବା ବିଶ୍ୱ ସାହିତ୍ୟ ପାଠ କରି କିଛି ଲେଖକ ସେଇ ପୁରୁଣା କଥା ଗୁଡିକୁ ଲେଖନ୍ତି । ପ୍ରେମ, ମୃତ୍ୟୁ, ସମୟ ଚେତନା, ଚେତନା, ପ୍ରକୃତି ଇତ୍ୟାଦି ବିଷୟ ଉପରେ ପ୍ରାୟ ସମସ୍ତେ କବିତା ଲେଖନ୍ତି । ସେଥିପାଇଁ ଅଧିକାଂଶ ନାଟକ ଏକାପରି ଲାଗେ । ଯେଉଁମାନେ କାହାଣୀ ଧର୍ମୀ ନାଟକ ଲେଖନ୍ତି, ସେମାନଙ୍କ ନାଟକରେ ପୁରୁଣା ନାଟକର ସାଦୃଶ୍ୟ ଉପଲବ୍ଧ ହେବ । ଏହି ପ୍ରକାର ସାହିତ୍ୟ ଲେଖିଲେ ମୁଖ୍ୟ ସ୍ରୋତରେ ଶୀଘ୍ର ସାମିଲ ହୋଇପାରନ୍ତି ଆପଣ । ଏମାନେ ସେ ଗୋଟିଏ ବିଷୟ ଉପରେ ବାରମ୍ବାର ଲେଖି ପୁରସ୍କାର ପାଆନ୍ତି ।

ମୁଁ ସାଦୃଶ୍ୟର ଉପାଦାନ ଥିବା ନାଟକ ଆଦୌ ଲେଖେନାହିଁ । ମୋ' ନାଟକରେ 'ଭିନ୍ନତା' ଥାଏ । ଖୋଜି ଖୋଜି ଓଡ଼ିଆରେ ଯାହା ଲେଖାଯାଇ ନାହିଁ ସେପରି ନାଟକ ମୁଁ ଲେଖେ । ମୋର ବିଶ୍ୱାସ, ସେଇ ସେଇ କଥାକୁ ବାରମ୍ବାର ଲେଖିଲେ ପୁରସ୍କାର ମିଳିପାରେ । କିନ୍ତୁ ଓଡ଼ିଆ ନାଟକର ଅଗ୍ରଗତି ହେବନାହିଁ । ଏ ଦେଶର ନାଟ୍ୟ ସଂସ୍କୃତିକୁ ପାଦେ ଆଗେଇ ନେବା ପାଇଁ ଆମକୁ ଅମଡା ବାଟରେ ଚାଲିବାକୁ ପଡିବ ।

ଆମ ପ୍ରଦେଶରେ ନୂଆ ବିଷୟରେ ନାଟକ ଲେଖିଲେ କେହି କିଛି କୁହନ୍ତି ନାହିଁ । ତେଣୁ ପରୀକ୍ଷା ମୂଳକ ନାଟକର କୌଣସି ଆଦର ନାହିଁ । ତଥାପି ମତେ ସତ୍ୟର ନିକଟବର୍ତ୍ତୀ ହେବାପାଇଁ ଭିନ୍ନ ନାଟକ ହିଁ ଲେଖିବାକୁ ପଡିବ ।

ଯଦି କୌଣସି ଏକଲା ଚୌକିରେ ବସିଥିବା ଦର୍ଶକଟିଏ ଏ ନାଟକଟା ଦେଖି ଖୁସି ହେଇଯିବ- ମୁଁ ଧନ୍ୟ ହେଇଯିବି । ପୁରସ୍କାର ମିଳୁ କି ନମିଳୁ, ଦର୍ଶକର ତାଳି ମାଡରେ ସବୁ ମିଳିଯାଏ ।

ରମେଶ ପ୍ରସାଦ ପାଣିଗ୍ରାହୀ

## ନାଟକର ଚରିତ୍ର

୧. ଅରିନ୍ଦମ (ନାଟ୍ୟକାର) – ୧୨୦ ବର୍ଷ

୨. ପୋଲିସ - ୧ / ବିଚାରପତି ବା ଅଫିସର / ଦରୱାନ୍

୩. ପତ୍‌ଲୁ (ପୋଲିସ୍‌-୨)– ସହକାରୀ ପୋଲିସ୍‌

୩. ଯାତ୍ରା ପାର୍ଟି ମେନେଜର / ବୟସ ୪୫/୫୦

୪. ଅରବିନ୍ଦ (ସାନଭାଇ) – ୨୮/୩୦ ବର୍ଷ

୬. ଓଝା ଗୁଣିଆ – ୫୦ ବର୍ଷ

୭. ଯୋଗୀନୀ – ଯେ କୌଣସି ବୟସ - ୫୦ରୁ ଉର୍ଦ୍ଧ୍ୱ

୮. ସୁହାସିନୀ – ୫୫ ବର୍ଷ

୯. ଡୋନା ସାମଲ – ୩୫ ବର୍ଷ



## ଦୃଶ୍ୟ – ୧

ମଂଚରେ ଆଲୁଅ ଆସିବା ପୂର୍ବରୁ ଗୋଟିଏ ପୁରୁଣା ମଡ଼େଲର (୧୯୨୦ର) କାର ଷ୍ଟାର୍ଟ ହେବା ବଂଦ ହେଇ ଯାଇଛି । ଗୋଟେ ଚଂଦା ହେଇ ଯାଇଥିବା ୧୨୦ ବର୍ଷର ବୁଢ଼ାଲୋକ ରାଧାକ୍ରିଷ୍ଣନ୍‌ଙ୍କ ପରି ବଡ଼ ପଗଡ଼ିଟିଏ ପିନ୍ଧିଛି । ଏବଂ ତାର କାର୍‌ଟିକୁ ଷ୍ଟାର୍ଟ କରିବାକୁ ଚାହୁଁଛି । ପାରୁନି । ସେ ପୁଣି ଥରେ କାର୍ ଷ୍ଟାର୍ଟ କରୁଛି । ଏଥର ମଧ୍ୟ ବିଫଳ ।

(ଆବହ ସଂଗୀତ ଗମ୍ଭୀର ଓ ଆଧିଭୌତିକ । ଶ୍ରୀ ଅରବିନ୍ଦଙ୍କ 'ପ୍ରାର୍ଥନା'ର ଅର୍କେଷ୍ଟ୍ରା ପରି ଶବ୍ଦ କ୍ରମଶଃ ଉଚ୍ଚତର ହେଲା ଏବଂ ଆଗରେ ଥିବା ଗୋଟେ କଦମ୍ବ ଗଛ ଉପରେ ଆଲୁଅ ଡିମରରେ ତୀବ୍ର ହୋଇ ଜଳି କ୍ଷୀଣ ହେଲା । ତାପରେ ସେଠାରୁ ଗୋଟେ ଶକ୍ତିଶାଳୀ ଲାଲ ରଂଗର ଆଲୁଅ ଆସି ପୁରୁଣା କାର୍‌ର ଡ୍ରାଇଭର ଉପରେ ପଡ଼ିଲା । ଆବହ ସଂଗୀତ ଉଚ୍ଚତର ହୋଇ କମିଗଲା । ଭାଡ଼ି ଉପରର ଆଲୁଅରେ ଜଣେ ଲାଲଶାଢ଼ି ଓ ଅଳଂକାର ପିନ୍ଧିଥିବା ନାରୀ (ଗଳାରେ ରୁଦ୍ରାକ୍ଷ ଓ ମୁଣ୍ଡରେ ମୁକୁଟ) । (ସ୍ୱର ସହିତ ପୁରୁଷ କଂଠରେ ଗୀତ)

ପୁରୁଷ କଂଠ : କହନ୍ତି ବୃକ୍ଷେ ଦିଶେ କିସ
ଦେଖ ମୋ' ଦଇବ ଭବିଷ୍ୟ

ନାରୀକଂଠ କାହୁଁ ଅଇଲୁ ତୁ' ପୁରୁଷ
କହ ତୋହର ନାମ କିସ
ବିଦେଶେ ରାଜ ରୂପ ହେଉ
ନଟର ପ୍ରାୟେ ଜନ ମୋହୁ
କହ ଏ କେବଣ କାରଣ
ଦେଖ ମୋହର ଧନୁର୍ବାଣ ॥

(କଦଂବ ବୃକ୍ଷର ଡାଢ଼ି ଉପରେ ବସିଥିବା ନାରୀଟି ଗୋଟିଏ ଆଲୋକିତ ଧନୁରୁ ଗୋଟେ ଆଲୋକିତ ପୁଷ୍ପବାଣ ବିନ୍ଧିଲା ଓ ଯଦି ସମ୍ଭବ, ନାଟ୍ୟକାର ଅରିନ୍ଦମ ମହାପାତ୍ର ବାଣଟାକୁ ଧରିନେଲେ । ଧରିନେବା ସତ୍ତ୍ୱେ ବାଣଟା ତାଂକ ଦେହକୁ ଭେଦି ଗଲା ଓ ସେ ସମ୍ମୋହିତା ହେଲାଭଳି ମାନସ ଭୂମି ଉପରେ ଏକ କଂପନ ଅନୁଭବ କଲେ ।)

ଲୋକ ଏ... ଏ... ଏ !! କିଏ ସେଇଠି ? (କାର୍ ଭିତରେ ଷ୍ଟିଅରିଂ ପାଖରେ ଗୋଟେ ମାଇକ୍ରୋଫୋନ୍ ଥିବା ଦରକାର) ଆଲୁଅଟେ କିଏ ପକଉଚି ମୁହଁ ଉପରକୁ ? କୁଆଡୁ କିଏ ଗୋଟେ ଅଦୃଶ୍ୟ ବ୍ରେକ୍ ଲଗେଇ ଦେଇଚିନା କଣ ? ଏ!!... ଗାଡ଼ିଟା କଣ ଆଗକୁ ଯାଉନି ? ଅନେକ ବେଳୁ ଏମିତି ହେଲାଣି ! ଗାଡ଼ିଟା ଅଟକି ଗଲା ଧୂ'ଧୂ' ଖରାବେଳେ... ଏବେ ଆସି (ଘଡ଼ି ଦେଖି) ରାତି ଗୋଟେ କୋଡ଼ିଏ ହେଲାଣି । ମୁଁ ଆଗକୁ ଯିବି ନା ନାହିଁ ? (ଆବହ ସଂଗୀତ) ଓଃ ! ପଗଡ଼ିଟା ବିରକ୍ତ କଲାଣି ! (ପଗଡ଼ିଟା ଖୋଲିଦେଲେ, ମୁଣ୍ଡରେ ହାତ ବୁଲେଇ ଆଣିଲେ । ଆଲୁଅ ମୁଣ୍ଡ ଉପରେ ଧଳା ହୋଇ ପଡ଼ିଛି । କ୍ରାସ ଶବ୍ଦ)

ଲୋକ ଏଁ ! ମୁଣ୍ଡରେ କଣ ଗୋଟେ ବୋଲି ଚୁଟି ନାଇଁ ! କିଏ ଗୋଟେ ନଣ୍ଡା କରି ଦେଲା ନା କଣ ? କି ଆଶ୍ଚର୍ଯ୍ୟ ! (କାର୍‌ରେ ଥିବା ଛୋଟ ଦର୍ପଣରେ ମୁହଁ ଦେଖିଲେ) ପୁରା ନଣ୍ଡା !! ସକାଳେ ଗାଧେଇଲା ବେଳେ ତ ମୋର ଚୁଟି

ଥିଲା । ମୁଁ ଆଜି ସାମ୍ପୋ କରିଥିଲି ! ଏଇଟା ସାଇନ୍ସ ଫିକ୍‌ସନ୍ ନା ମ୍ୟାଜିକ୍ ରିଏଲି ଜମ୍ ? ନଷ୍ଟା କରିଦେଲା ନା ମୁଣ୍ଡ ଖରାପ ହେଇଗଲା ମୋର ?

(କ୍ୱାଟ ବୋତଲଟା ବାହାର କରି ଧୁମ୍ ପିଇଲେ ।)

(ପୁଣିଥରେ ଲାଲ ରଂଗର ଆଲୁଅ ପଡ଼ିଲା ଭାଡ଼ି ଉପରେ । ସେଇଠି ହୀରା ନୀଳାର ଅଳଂକାର ପିନ୍ଧିଥିବା ମଧ୍ୟବୟସ୍କା ନାରୀ ଜଣକ ଧ୍ୟାନରେ ବସିଥିବା ପରି ଦିଶିଲା ।)

ଲୋକ ଆଚ୍ଛା ସେ ଗଛ ଉପରୁ ଗୋଟେ ନାଲି ଆଲୁଅ କୁଆଡୁ ଆସୁଛି ? ଗୋଟେ ଅଦୃଶ୍ୟ ଶକ୍ତି ବିଜୁଳି ପରି ଥରକୁ ଥର ଦିଶୁଚି ଆଉ ଲିଭିଯାଉଛି ! କଥା କଣ ? ମତେ ନିଶା ହେଇଗଲା ନା କ'ଣ ? (ଆଉଥରେ ପିଇଲେ ଓ ବୋତଲ ଧରି ଓହ୍ଲାଇ ଆସିଲେ । ଚାରିପଟକୁ ଚାହିଁ କଣ ଗୋଟେ ଶୁଂଘିଲା ପରି ହେଲେ ।) ଇସ୍ ! କୁଆଡୁ ଗୋଟେ ଗଂଧ କଣ ଆସୁଚି ? ଉତ୍କଟ ଗଂଧ, ଗୋଟେ କୁକୁର ଫୁକୁର ଟ୍ରକ୍‌ତଳେ ଚାପି ହେଇଯାଇଚି ନା କଣ ? (ବିଭିନ୍ନ ଯାଗାରେ ଖୋଜିଲେ, ଆବହ ସଂଗୀତ । ମିଳିଲା ନାହିଁ) ନା ! ଆଉ ଗୋଟେ କିଛି ପଚି ସଢ଼ି ଯାଇଚି... ମତେ ଲାଗୁଚି ଲୋକଙ୍କର ନୈତିକ ଚରିତ୍ର ଆଉ ବିବେକ... ଦି'ଟା ଯାକ ଉପରେ ଟ୍ରକ ମାଡ଼ି ଯାଇଚି । ଠିକ୍ ଦୁଶୁନି... କିଂତୁ ଚରିତ୍ର ଆଉ ବିବେକ... ଦୁଇଟାଯାକ ଆଜିକାଲି ପଚି ଯାଉଛଂତି ! ଏଃ ! ଭୀଷଣ ଗଂଧ ! ! (ପୁଣି ପିଇଲେ ଓ ବୋତଲଟାକୁ ଗାଡ଼ିର ଷ୍ଟିଅରିଂ ପାଖରେ ରଖିଦେଲେ । ଝୁଣ୍ଟି ପଡ଼ିଲେ ଅତ୍ୟଧିକ ନିଶାରେ ଷ୍ଟିଅରିଂ ପାଖରେ ତାଂକର ବ୍ଲାକ୍ ଆଉଟ୍ ହେଇଗଲା । ସେ ସୀଟ୍ ଉପରେ ମୁଣ୍ଡ ରଖି ଶୋଇ ପଡ଼ିଲେ । ପୋଲିସ୍‌ର ପେଟ୍ରୋଲିଂ ହୁଇସିଲ ଶୁଭିଲା । ପ୍ରବେଶ କଲେ ଜଣେ ମୋଟା ପୋଲିସ୍ ।

ପୋଲିସ୍-୧ : କିଏ ? କିଏ ସେଠି ? ରାତି ସାଢ଼େ ଗୋଟାଏ ବାଜିଲାଣି... କିଏ ତମେ ବାବୁ ? କିଏ ?

(ପାଖକୁ ଆସିଲେ ଆଉ ତାକୁ ହଲେଇ ଦେଲେ । ଲୋକଟା ଟଳମଳ ହେଇ ନିଜକୁ ସମ୍ଭାଳି ନେଲା ।)

ପୋଲିସ୍-୧ : ଘର କୋଉଠି ? ହିନ୍ଦୁସ୍ତାନ ନା ପାକିସ୍ତାନ ?

ଲୋକ ହିଂଦୁସ୍ତାନ ନୁହେ କି ପାକିସ୍ତାନ ନୁହେ । ମୁଁ ଯୋଉଠୁ ଆସିଚି - ସେଇଟା ଅନିର୍ଦ୍ଦିଷ୍ଟସ୍ତାନ୍ !

ପୋଲିସ-୧ : କଣ କରନ୍ତି ଆପଣ ?

ଲୋକ ସ୍ୱପ୍ନ ଦେଖେ !

ପୋଲିସ-୧ : ରାଜଧାନୀରେ ଆପଣ ସ୍ୱପ୍ନ ଦେଖିବା ଚାକିରୀ କରିଛଂତି ?

ଲୋକ ଆଜ୍ଞା ! କଥା ହଉଚି - ଏ ସହରରେ କାହାକୁ ସ୍ୱପ୍ନ ଦେଖି ଆସେନି । ସେଇଥିପାଇଁ ଏ ରାଜ୍ୟରେ ସ୍ୱପ୍ନର ଦୁର୍ଭିକ୍ଷ ପଡ଼ିଚି । କଳ୍ପନାର ଦୁର୍ଭିକ୍ଷ !

ପୋଲିସ-୧ : ସ୍ୱପ୍ନର ଦୁର୍ଭିକ୍ଷ ପଡ଼ିଚି ? ପଡୁ ! ରିଲିଫ୍ ମିଳିବ ! କେନ୍ଦ୍ରକୁ ଲେଖ - ସାହାଯ୍ୟ ମିଳିବ ।

ଲୋକ କେନ୍ଦ୍ରକୁ ଲେଖିବା ଦରକାର ନାଇଁ ହୋ ପୁଲିସି ବାବୁ । ସ୍ୱପ୍ନ ନ ମିଳିଲେ ହିନ୍ଦୀ ଆଉ ତେଲୁଗୁ ଫିଲ୍ମରୁ କପି କର । ଟ୍ୟୁନିଙ୍ଗ୍ ନ ମିଳିଲେ ବଂଗଳା କି ତେଲୁଗୁରୁ କପି କର । ମୁଁ କପି କରୁନି ! ଓରିଜିନାଲ୍ ସ୍ୱପ୍ନ ଦେଖୁଚି...

ପୋଲିସ-୧ : ତମେ ମାଲ୍ ପିଇକି ଓରିଜିନାଲ୍ ସ୍ୱପ୍ନ ଦେଖୁଚ ! ଚାଲ ! ବର୍ତ୍ତମାନ ଥାନାକୁ ଚାଲ ! ତମ ଓରିଜିନାଲ୍ ଛଡ଼େଇ ଦଉଛି ।

(ଟାଣିଲା ବୁଢ଼ା ଲୋକଟାକୁ)

ଲୋକ ଏୟ୍ ! ସାବଧାନ ! ବଂଗୋପସାଗରରୁ ମୁଁ ପଚାଶ ଏକର

ସମୁଦ୍ର କିଣିଚି । ସବୁ ଯାକ ଲହଡ଼ି ମୋର, ଇଚ୍ଛା ହେଲେ ମୁଁ ଲହଡ଼ି ଗଣିବି... ଇଚ୍ଛା ନହେଲେ ବାଲିରେ ତକିଆ ବନେଇ ରୁମାଲ ପକେଇ ଶୋଇ ପଡ଼ିବି ।

ପୋଲିସ-୧ : ସେଇଠୁ ?

ଲୋକ ସେଇଠୁ ? ଏଇ ଯୋଉ ଆକାଶଟା ଦେଖୁଚ... ସେଥିରୁ କୋଡ଼ିଏ ପଚିଶି ଏକର ଶୂନ୍ୟତା କିଣିବାକୁ ଯାଉଚି ।

ପୋଲିସ-୧ : (ଦର୍ଶକମାନଂକୁ) ଆଚ୍ଛା ! ଏ ଲୋକ କିଏ ? (ଅନ୍ୟପଟକୁ ଯାଇ ତାଳିମାରି) ପତ୍‌ଲୁ ! ଆବେ ପତ୍‌ଲୁ ! (ପତ୍‌ଲୁ ପ୍ରବେଶ କଲା) ଆବେ ଦେଖିଲୁ, ଏ ଶଳା ପାଗଳାଟା କୋଉଠୁ ଆସିଚି...

ପତ୍‌ଲୁ ସାର୍ !

ପୋଲିସ୍-୧ : ଆବେ ସେ ଦୋକାନ ବାରଣ୍ଡାରେ ବସି ଗଂଜେଇ ଟାଣୁଚୁ କ'ଣ ? ଶୀଘ୍ର କାଠଗଡ଼ାଟା ଆଣ – ଏଇଠି ପକା ! ଏଇଟାକୁ ଜେରା କର !

ପତ୍‌ଲୁ ସାର୍ ! (ସଂଗେ ସଂଗେ ଯାଇ କାଠଗଡ଼ାଟା ଆଣିଲା ଓ ମଂଚ ଉପରେ ପକେଇଲା)

ପୋଲିସ୍ ଏଇଟା ଶଳା କିଏ ଗୋଟେ ? ରାତି ଦେଢ଼ ବାଜିଲାଣି – ଏଇଠି ମାଲ୍ ପିଇ ବୋବାଲ୍ କରୁଚି ! ଜେରା କର ଶଳାକୁ ।

ପତ୍‌ଲୁ ଚାଲ ! ତା' ଭିତରକୁ

(ଲୋକଟା କାଠଗଡ଼ା ଭିତରେ ଯାଇ ଠିଆ ହେଲା)

କିଏ ତମେ ? କୋଉ ଯାତ୍ରା ପାର୍ଟିରୁ ଆଇଚ ? ହଇଓ ବାବୁ ! ମୁଣ୍ଡରେ ତମର ସେଇଟା ଧଳା ଚୁଟିର ୱିଗ୍ ଲଗେଇଚ ନା... ସତରେ ତମେ ଜଣେ ବୁଢ଼ାଲୋକ ? ଏଁ ! ଚୁପ୍ ହେଇ କଣ ଠିଆହେଲ ? ତମ ବୟସ କେତେ ? ତମେ କଣ କ୍ୟାରେକ୍ଟର

ଆର୍ଟିଷ୍ଟ ଥିଲ ନା ଆର୍ଟ ଫିଲ୍ମର ଫାଦର୍ ଆର୍ଟିଷ୍ଟ ? ବୟସ କେତେ ?

ଲୋକ ଶହେ କୋଡ଼ିଏ !

ପଟ୍‌ଲୁ ଏଁ ! ! ଶହେ କୋଡ଼ିଏ ବର୍ଷ ? ଖାଉଚ କ'ଣ ?

ଲୋକ ସ୍ୱପ୍ନ ! ମୁଁ ସ୍ୱପ୍ନ ଖାଏ, ସ୍ୱପ୍ନ ପଢ଼େ ଆଉ ସ୍ୱପ୍ନ ସାଂଗରେ ଶୁଏ ! କଣ କରିବ ତମେ ମୋର ? ମୁଁ ଯାତ୍ରା ଲେଖେ - ଆଉ ଡିରେକ୍‌ସନ ଦିଏ... ! ରିମୋଟ୍ ଗାଁମାନଂକରେ ଗୋଟେ ଏକଲା ଘରେ ରୁହେ ଏବଂ ଯାତ୍ରା ପାର୍ଟିର ଗୋଟେ ଗୋଟେ ଭଲ କଳାକାର ଆସି ମୋର ଗୋଡ଼ ଚିପି ଦିଏ ।

ପଟ୍‌ଲୁ କଣ ସେଇ ଏକଲା ଘରେ ? ସାଂଘାତିକ । ତମେ ଶୋଇଲା ବେଳେ ଲୁଂଗୀ ପିନ୍ଧିକି ଶୁଅ ନା ବର୍‌ମୁଡ଼ା ?

ଲୋକ (ବଡ଼ ପାଟିରେ) ଆମ ଟାଇମରେ ଆମେ ଲୁଂଗି ପିନ୍ଧି ଶୋଉଥିଲୁ ସାର୍ ଏବଂ... ଏବଂ... ସକାଳ ହେଲା ବେଳକୁ... ସେ ଲୁଂଗି, ଆଉ ଅଣ୍ଟାରେ ନଥାଏ ! ସୋ ? ତମେ କ'ଣ କରିବ ମୋର ? ମୋର ଚରିତ୍ର ଖରାପ ବୋଲି କହିବ ? ହୁ ଆର୍ ୟୁ ରାସ୍‌କେଲ୍‌ସ୍ ? ତମ ରାଜଧାନୀରେ ଶହେରୁ ୭୭ ଭାଗ ହୋମୋସେକ୍‌ସୁଆଲ୍‌ସ୍ !

ପଟ୍‌ଲୁ ଅବ୍‌ଜେକ୍‌ସନ୍ ! ଅବ୍‌ଜେକ୍‌ସନ୍ – (ବୁଲି ପଡ଼ି ମୋଟା ଇନ୍‌ସପେକ୍ଟରଙ୍କୁ) ୟୋର ଅନର୍ ! ଏ ଲୋକ ବହୁତ ଅଭଦ୍ର କଥା କହୁଚି । ରାଜଧାନୀର ସଭ୍ୟ ଦର୍ଶକମାନଂକ ଆଗରେ ଠିଆ ହୋଇ... ପୁରା ଷ୍ଟେଜ୍ ଉପରେ ଠିଆ ହେଇ, ଲୁଂଗି ଖୋଲିବା କଥା କହୁଚି... ପୁରା ଅଭଦ୍ର... ପୁରା ଅସଭ୍ୟ... ବର୍ବର ! ... ଏଇଟା ଗୋଟେ କଣ ମଣିଷ ! ଯାକୁ ଜେଲ୍‌ଦଣ୍ଡ ଦିଆଯାଉ !

ପୋଲିସ୍ (ଥଣ୍ଡା ମସ୍ତିଷ୍କରେ) ଅବ୍‌ଜେକ୍‌ସନ୍ ସସ୍‌ଟେନ୍‌ଡ୍ ! କ୍ୟାରିଅନ୍ !

ପତଲୁ — ସାର୍ ?

ପୋଲିସ — ଏକବିଂଶ ଶତାବ୍ଦୀରେ ଲୁଂଗି ଉଠି ଗଲାଣି, ସବୁ ବର୍ମୁଡା ! ଅସଭ୍ୟ/ବର୍ବର ବୋଲି କିଛି ନାହିଁ – ସବୁ ଉତ୍ତର ଆଧୁନିକତା !! କ୍ୟାରିଅନ୍ !!

ନାଟ୍ୟକାର — (ବିପ୍ଳବ କଲା ଭଳି) ରାତି ବାରଟା ପରେ... ଆଉ ଦିନ ବାରଟା ପରେ... ଆପଣ ଆମ ଭଳି ସ୍ୱପ୍ନ ଦେଖାଳିମାନଂକୁ ଗେ' ଆଉ ଲେସ୍‌ବିଆନମାନଂକ ସଂପର୍କରେ କିଛି ପଚାରି ପାରିବେ ନାହିଁ । ନୋ ! କିଛି ପଚାରି ପାରିବେନି ! ଆପଣ କଣ ଜାଣି ନାହାନ୍ତି – କିନ୍ନରମାନଂକୁ ଏ ଦେଶରେ ସ୍ୱତଂତ୍ର ସୁବିଧା ଦିଆ ଗଲାଣି ବୋଲି ?

ପତ୍‌ଲୁ — (ଅତ୍ୟନ୍ତ ଉତ୍ତ୍ୟକ୍ତ ହୋଇ ଏବଂ ନାଟ୍ୟକାରର ବ୍ୟବହାରରେ କ୍ଷୁବ୍ଧ ହୋଇ) ଗେ' !! ଲେସ୍‌ବିଆନ୍ !! କିନ୍ନର !! ନନ୍‌ସେନ୍‌ସ୍ ! ବର୍ତ୍ତମାନ... ଏଇ ରାତି ଦି'ଟା ବେଳେ ମୁଁ ତମ୍‌କୁ ଆରେଷ୍ଟ କଲି । ଚାଲ ! ଥାନା ହାଜତକୁ ଚାଲ !

ନାଟ୍ୟକାର — ମୁଁ ଯିବିନି ! ମୁଁ ଜଣେ ସିନିଅର ସିଟିଜେନ୍... ବୟସ ମୋର ଶହେ କୋଡ଼ିଏ ! ମୁଁ କାଳି ଚରଣ ପଟ୍ଟନାୟକଙ୍କ ସାଂଗ... ଗୋଦାବରୀଶ ମହାପାତ୍ର ମୋ କ୍ଲାସ୍‌ମେଟ୍... ନିଆଁଖୁଣ୍ଟା ବୋଲି ଗୋଟେ ପତ୍ରିକା ବାହାର କରୁଥିଲା... ହରେକୃଷ୍ଣ ମହତାବ ମୋଠୁ ତିନିବର୍ଷ ସାନ ! ତମେ କିଏ ହୋ ଆରେଷ୍ଟ କଲା ବାଲା ?

ପୋଲିସ — ଦେଖନ୍ତୁ... ମି. ସିନିଅର୍ ସିଟିଜେନ୍ ! ଆପଣ ରାତି ଦିଇଟାରେ ପବ୍ଲିକ୍ ରାସ୍ତାରେ ମଦ ପିଇ ଗାଡ଼ି ପାର୍କିଂ କରିଛଂତି ଆଉ ପୋଲିସ୍ ପ୍ରଶ୍ନ ପଚାରିଲେ ଅଭଦ୍ର ଭାଷା କହୁଛଂତି । ଏଇଟା ରାଜଧାନୀ ! ଏଠି ଏଗୁଡ଼ା ବରଦାସ୍ତ କରାଯିବ ନାଇଁ !!

ନାଟ୍ୟକାର — ମୁଁ ଜାଣି ଜାଣି ଏଇଠି ଗାଡ଼ି ଅଟକେଇ ନାହିଁ... ଆପେ

ଆପେ ଏଇ ଆବର୍ଜନା ଭର୍ତ୍ତି, ଦୁର୍ଗନ୍ଧ ମଇଳା ଯାଗାରେ ମୋ' ଗାଡ଼ି ବଂଦ ହେଇଗଲା । ଆପେ ଆପେ !

ପୋଲିସ — ଆପେ ଆପେ କଣ ? ଆପେ ଆପେ କେମିତି ବଂଦ ହେଇଗଲା ?

ନାଟ୍ୟକାର — ଆପେ ଆପେ ! ଆପେ ଆପେ ବଂଦ ହେଇଗଲା ମୋର ସୃଜନ ଯାତ୍ରା ! ମୋ' ଜୀବନର ଗାଡ଼ି ।

ପତଲୁ — କାହିଁକି ? କେମିତି ?

ନାଟ୍ୟକାର — (ମୁଣ୍ଡ ତଳକୁ କରି) ଦେଖୁଛଂତି ଆପଣମାନେ ମୋ' ମୁଣ୍ଡକୁ ? ମୁଁ ଯେତେବେଳେ ଘରୁ ବାହାରିଲି, ଏ ମୁଣ୍ଡରେ ପ୍ରଚୁର ବାଳ ଥିଲା । ଅଥଚ... ମୋ' ଗାଡ଼ି ବଂଦ ହେଇଗଲା ପରେ କିଏ ଗୋଟେ ମତେ ପୁରା ନଣ୍ଡା କରି ଦେଇଛି । ଆଉ ଅଯୋଗ୍ୟ ବୋଲି ସେଠି ନାଲି ଛକିଟେ ମାରି ଦେଇଚି...(ନାଟ୍ୟକାର ମୁଣ୍ଡ ନୁଆଁଇଲେ) ଦେଖନ୍ତୁ... ଆଉ ମୁଁ ଭାବୁଚି ଓଡ଼ିଶା ଭଳି ଯାଗା ନ ହେଇଥିଲେ ମତେ ଏମିତି ନଣ୍ଡା କରିନଥାନ୍ତେ ! ବାଜେ ଯାଗା ! ଓଡ଼ିଶାଟା ଗୋଟେ ଫାଲ୍‌ତୁ ଲୋକଙ୍କର ଦେଶ !

ପୋଲିସ୍ — କିଏ ? କିଏ ଏମିତି କଲା ? କାଇଁ ସିଏ ? କୋଉଠି ଅଛି ?

ନାଟ୍ୟକାର — ଗୋଟେ ଅଦୃଶ୍ୟ ଶକ୍ତି ସାର ! କୋଉଠି ଅଛି ମୁଁ ଜାଣିନାହିଁ ।

(ଆବହ ସଂଗୀତରେ ପଚାଶଟା ଭାଓଲିନ୍‌ରେ ଗୋଟେ ଉତ୍କଣ୍ଠାର ସାଂଗୀତିକ ରୂପ ଦିଆଯିବ ଓ ପାଶ୍ଚାତ୍ୟ ତାଳ ମଧ ତା' ସାଂଗରେ ଯିବ, ମଂଚ ପୁରା ଅଂଧାର ହେଇଯିବ । ତାଳ ବଂଦ ହୋଇଯିବ । ଭାଡ଼ି ଉପରେ ନାଲି ଆଲୁଅ ଜଳିବ ଓ ସେଇଠି ଦିଶିବ ଯୋଗିନୀଟିଏ ସାଧନାରେ ବସିଛି । ତାପରେ ଲିଭିଯିବ ।)

ନାଟ୍ୟକାର — ଟ୍ରକ୍ ଡାଲାରେ ବସି ମୁଁ ଓଡ଼ିଶା ସାରା ବୁଲୁଥିଲି ଯାତ୍ରା ଦଳ

ସାଂଗରେ... ଚବିଶ ଘଣ୍ଟା ମତେ ଓଡ଼ିଶାର କୋଉ ଗୋଟେ ହଜି ଯାଇଥିବା ଲୋକ ସଂସ୍କୃତିର କନ୍‌ସାର୍ଟ ଶୁଭୁଥିଲା... (ସାକ୍ସ ଫୋନ୍‌ର ଆଳାପ)

ପଟ୍‌ଲୁ ମିଛ କଥା ! ମିଛ କଥା ! ଗୁଲି ମାରୁଚ !

ନାଟ୍ୟକାର ନା !

ପଟ୍‌ଲୁ ଏଇ ଟିକିଏ ଆଗରୁ କହୁଥିଲ ତମେ କେବଳ କଳ୍ପନାର ଆକାଶରେ ଉଡ୍ଡୁଥିଲ !

ନାଟ୍ୟକାର ହଁ ଉଡ୍ଡୁଥିଲି... କିଂତୁ ଟ୍ରକ୍ ଡାଲାରେ ବସି ବସି... । ସେମାନେ ମୋ' ମୁଣ୍ଡରେ ଗୋଟେ ଫାଇଭ୍ ଗ୍ୟାଲନ୍ କାଓବୟ୍ ହ୍ୟାଟ୍ ପିନ୍ଧେଇ ଦଉଥିଲେ । କୋଉ ଗୋଟେ ଝିଅ ଆଣି ତାର ଗଗଲ୍‌ସ୍‌ଟା ପିନ୍ଧେଇ ଦେଉଥିଲା ମତେ ଆଉ ତାରିଭିତର ମୁଁ ଉଡ୍ଡୁଥିଲି... କଳ୍ପନାର ଆକାଶରେ... ବେପରୁଆ... (ସାକ୍ସ ବାଜିଲା)

ପୋଲିସ୍ କେତେ ସମୟ ? କଳ୍ପନାର ଆକାଶରେ କେତେ ସମୟ ଉଡ୍ଡୁଥିଲ ଆଉ କେତେ ସମୟ ମାଟି ଉପରେ ଠିଆ ହଉଥିଲ ?

ନାଟ୍ୟକାର କେମିତି କହିବି ସାର୍ ? ମୁଁ ତ ନିଜେ ଆସିଚି ଏ ଆବର୍ଜନା ଭିତରକୁ ମାଟିର ଅତ୍ୟାଚାର ସହିବାକୁ । ଜାଣିଚି... ଗୋଟିଏ ମୃତ୍ୟୁରେ ମରି ବାରମ୍ବାର ଜନ୍ମିବାକୁ ହେବ ଏ ଆବର୍ଜନାମୟ ରାଜଧାନୀରେ !

(ଆବହ ସଂଗୀତରେ ସାକ୍ସ ଫୋନ୍/ସେ ଗାଡ଼ି ପାଖକୁ ଆସିଲେ)

ଆଗକୁ ଗଡ୍ଡୁନଥିବା ଏ କାର୍ ଭିତରେ ବସି ରାସ୍ତାକୁ ପଚାରୁଛି : "ମୁଁ ଥିବି ତ କାଲି ସକାଳୁ ?

ପଟ୍‌ଲୁ ସକାଳ ଯାଏଁ ଏଇଠି ଠିଆ ହେଇ ଶଳା ଯାତ୍ରାପାର୍ଟି – ସ୍ୱପ୍ନ ଦେଖୁଥିବୁ ? ୟୁ ଆର୍ ଅଣ୍ଡର ଆରେଷ୍ଟ !

ନାଟ୍ୟକାର — କ'ଣ କହିଲ ?

ପତ୍‌ଲୁ — ଚାଲ ଶଳା ! ତୋ' ଭଳିଆ ସ୍ୱପ୍ନ ଦେଖିବା ଲୋକ ଆମ ସମାଜ ପାଇଁ ଦରକାର ନାଇଁ । ଚାଲ୍ ! ହାଜତ ଭିତରେ ସ୍ୱପ୍ନ ଦେଖିବୁ ଚାଲ !

(ପୋଲିସ୍ ଗୋଟେ ଧକ୍‌କା ଦେଲା ଓ ଲୋକଟା ନିଶାରେ ଥିବାରୁ ଯାଇ ତଳେ ଥିବା ପ୍ଲାଟଫର୍ମ ଉପରେ ପଡ଼ିଗଲା, ଆଲୋକ ଡିମର୍‌ରେ କମି ଆସିଲା ଓ ପୋଲିସ୍‌ମାନେ କାଠଗଡ଼ାଟାକୁ ନେଇ ପ୍ରସ୍ଥାନ କଲେ ।)

(ଅଂଧାର)

୦୦୦



## ଦୃଶ୍ୟ – ୨

ଆଲୋକ ଆସିଲା ବେଳକୁ ପୁରୁଣା ଆମ୍ବାସାଡ଼ାର୍ କାର୍‌ଟା ଆଉ ମଂଚ ଉପରେ ନାହିଁ । ମଂଚର କେନ୍ଦ୍ରଠାରୁ ଟିକିଏ ଉପରକୁ ୩ ଫୁଟ ୧୦ଇଂଚ × ୩ ଫୁଟ ୧୦ ଇଂଚର ବେଦୀ ଉପରେ ନାଟ୍ୟକାର ସେମିତି ଶୋଇଛି ।' ଉପରୁ କୋଉ 'ଗୋଟେ ଅଜଣା ଉତ୍ସରୁ ସୋରାଏ ଉଦିତ ସୂର୍ଯ୍ୟର ଆଲୁଅ ଆସି ତା' ଉପରେ ପଡୁଚି । ଶୁଭୁଚି, ପକ୍ଷୀମାନଂକର କିଚିରି ମିଚିରି ସକାଳର ପ୍ରଭାବ ପରିସ୍ଫୁଟିତ ହେବ । ମ୍ୟୁନିସିପାଲିଟିର ସୁଇପରମାନେ ଆସି ମଂଚ ସଫା କରୁଛଂତି । ସଫା କରୁ କରୁ ସେମାନେ ଦେଖି ପାରୁଛଂତି ବୃଦ୍ଧ ନାଟ୍ୟକାର ସେଇଠି ଶୋଇଚି । ୨ ଜଣ ସୁଇପର ମିଶି ନାଟ୍ୟକାରକୁ ଉଠାଇ ମଇଳା ବୋଝେଇ ହଉଥିବା ତିନିଚକିଆ ଗାଡ଼ିରେ ରଖିଲେ । ପ୍ରଥମେ ବି-ଫ୍ଲାଟ୍ ବଂଶୀରେ ଆଳାପଟିଏ ଶୁଭିଲା । ତାପରେ ତାଳ, କୋରାଲ ହମିଂ । ସୁଇପରମାନେ ନାଟ୍ୟକାରର ଶରୀରକୁ ମଇଳା ଗାଡ଼ିରେ ପକେଇ ଦୁଇ/ତିନି ଥର ବେଦୀଟିକୁ ପରିକ୍ରମା କରିବା ସମୟରେ ନାରୀ କଂଠରେ ଶୁଭିଲା –

ଦେହ ବହିଲେ ନିଶ୍ଚେ ମରି
ସଂସାର ନୁହଇ କାହାରି
ବୃକ୍ଷର ତଳେ ଯେହ୍ନେ ଆସି
ପଥିକେ ବିଶ୍ରାମନ୍ତି ବସି
ପୁଣି ଚଳନ୍ତି ଶ୍ରମ ସାରି
ସେ ବୃକ୍ଷ ନୁହଇ କାହାରି ॥

ଏହି ଗୀତ ଚାଲିଥିବା ବେଳେ ମ୍ୟୁନିସିପାଲିଟି ମଇଳା ଗାଡ଼ିଟି ଆସି ନିମ୍ନ ମଂଚରେ ପଡ଼ିଥିବା ଖଟ ପାଖରେ ଲାଗିବ ଓ ସୁଇପରମାନେ ନାଟ୍ୟକାରଙ୍କୁ ଆଣି ଖଟ ଉପରେ ଶୁଆଇ ଦେବେ। ମ୍ୟୁନିସିପାଲିଟି ଲୋକଙ୍କ ଭିତରୁ ଜଣେ ଯାଇ ଗୋଟେ ଧଳା ଚାଦର ଆଣି ଗୋଡ଼ାଇ ଦେଲା ତାଂକ ଦେହରେ। ନାଟ୍ୟକାରଙ୍କର ମୁଣ୍ଡଟା ରହିଲା ଦର୍ଶକମାନଂକ ପଟକୁ ଓ ଗୋଡ଼ଟା ସାଇକ୍ଲୋରୋମା ପଟକୁ। ପଛପଟର ଧଳା ପରଦାଟି ନାରଙ୍ଗୀ ରଂଗରେ ଆଲୋକିତ ହେଲା। ଏବଂ ମ୍ୟୁନିସିପାଲିଟି ଲୋକେ ତିନିଚକିଆ ମଇଳା ଗାଡ଼ି ନେଇ ଚାଲିଗଲେ।

ବାମପଟୁ ହାତରେ ଗୋଟେ ପୂଜାଥାଳୀ ଧରି ପ୍ରବେଶ କଲେ ସୁହାସିନୀ। ବୟସ ଷାଠିଏ, ଦୁଇ ପାଦ ଆସିଲା ପରେ ତାଂକର ମନେ ପଡ଼ିଲା ଯେ ସିଏ ଘଣ୍ଟିଟା ଆଣି ନାହାନ୍ତି। ସେ ସେଇଠୁ ପଛକୁ ବୁଲି ପାଟିକରି ଡାକିଲେ...

ସୁହାସିନୀ — ପହଲି ଭାଇ! ଟିକିଏ ଘଣ୍ଟିଟା ଦେଲ! ଭୁଲିଗଲି, ଏ ସିନ୍‌ରେ ମୋର ପୂଜା କରିବାର ଅଛି... (ଭିତରୁ କ'ଣ ଗୋଟେ ଅସ୍ପଷ୍ଟ ସ୍ୱରରେ ଶୁଭିଲା) ଏଁ? ଘଣ୍ଟି...? ଘଣ୍ଟି... ପୂଜା କରିବା ଘଣ୍ଟି ଟା... ନେଇ ଆସ ଗ୍ରୀନ୍ ରୁମ୍‌ରୁ... (ଗୋଟିଏ ଅଦୃଶ୍ୟ ଲୋକର ହାତ ଓ୍ୱିଙ୍ଗସ୍ ଭିତରୁ ଘଣ୍ଟିଟା ବଢ଼େଇଲା। ସୁହାସିନୀ ଗ୍ରହଣ କଲେ) ଏଁ! ହଁ... ମତେ ନାଟ୍ୟକାରର ଓ୍ୱାଇଫ ରୋଲ୍‌ଟା କରିବାର ଅଛି... ସକାଳୁ ସକାଳୁ ମୁଁ ଗାଧେଇ ପାଧେଇ ତୁଳସୀ ଚଉଁରାରେ ପାଣି ଢାଳିବି ଆଉ ଘଣ୍ଟି ବଜେଇବି। ନାଟ୍ୟକାରଟା ବାହ୍ମଣ ଘରତ... ବହୁତ ଝାମେଲା। ଟିକିଏ ବିଷ୍ଣୁ ମାହାପୁରୁଙ୍କୁ ଦୀପ ଧୂପ ଦେଖେଇ ଉଖୁଡ଼ା ଗଣ୍ଡେ ଭୋଗ ନକଲେ ଏ ଘରେ ମାହାପୁରୁ ରହିବେ ନାଇଁ।

(ଡଗ ଡଗ ହୋଇ ଚାଲି ଆସିଲେ ମଂଚର ଡାହାଣ ପଟ ଶେଷକୁ ଓ ସେଇଠି ଠିଆ ହେଇ କାଳ୍ପନିକ ମାହାପୁରୁଙ୍କୁ ଘଣ୍ଟି ବଜାଇ ପୂଜା କରିବେ। ଯଥାଶୀଘ୍ର ପୂଜା କାମ ବଢ଼େଇ ଫେରିଲା ବେଳକୁ ଆଖି ପଡ଼ିବ ଖଟରେ ଶୋଇଥିବା ନାଟ୍ୟକାର ଉପରେ।)

ସୁହାସିନୀ — ଏଯ଼ ! ଏତେବେଳ ଯାଏ ଶୋଇଚ କ'ଣ ? ସାତଟା ବାଜିଲାଣି । (ଘଣ୍ଟିଟା ନାଟ୍ୟକାରଙ୍କ କାନ ପାଖରେ ବଜେଇଲେ । କୌଣସି ପ୍ରଭାବ ଜଣାଗଲା ନାହିଁ ।)

(ଥାଳୀଟାକୁ ବେଦୀ ଉପରେ ଥୋଇ ଦେଲେ । କିଂତୁ ବାମ ହାତରେ ଘଣ୍ଟିଟା ଧରିଛଂତି, ଚାଲି ଆସିଲେ ସ୍ୱାମୀଙ୍କ ପାଖକୁ ।)

ସୁହାସିନୀ — ହଇ ଏ ! ନ'ଟା ବେଳକୁ ପରା ରିହାର୍‌ସାଲ୍ ରଖିଚ ? ଉଠି... ରେଡ଼ି ହଉନ ? ଶୋଇଚ କଣ ? ଦିହ ଭଲ ନାଇଁ ? (ଖଟ ଦାଢ଼ରେ ବସିଲେ, ତାଂକୁ ଆଉଁସିଲେ)

ନାଟ୍ୟକାର — କାଲି ରାତିରେ ମୋର ହଠାତ୍ ମୃତ୍ୟୁ ହେଇଗଲା । ଆକ୍‌ଚୁଆଲି ମୃତ୍ୟୁ ମନକୁମନ ହେଇନି, ମତେ ମଡ଼ର କରି ସହରର ଅଳିଆ ଗଦାରେ ପୋପାଡ଼ି ଦିଆଯାଇଥିଲା ।

ସୁହାସିନୀ — ସକାଳୁ ସକାଳୁ କଣ ଗୁଡ଼େ ବାଜେ କଥା କହୁଚ ? କଣ ହେଇଚି ତମର ? ରାତିରେ ପିଆ ପିଇ କରିଥିଲା ନା କଣ ?

(ଅନ୍ୟମନସ୍କ ହୋଇ ଥାଳିରେ ଥିବା ନଡ଼ିଆ ଆଉ ଫୁଲ ଗୁଡ଼ାକୁ ଅଣ୍ଡାଳି ଅଣ୍ଡାଳି କହିଲା)

ସୁହାସିନୀ — କାଲି ମଂଗଳବାର ଅଛି । ମୁଁ ସେ ଖରାଖାଇ ଠାକୁରାଣୀ ଓଝା ପାଖକୁ ଯିବି... ତମ ନାଁରେ ଗୋଟେ ପୂଜା କରି ଦେବି । ସବୁ ଭଲ ହେଇଯିବ । (ଅନ୍ୟମନସ୍କ ହୋଇ ଆକାଶକୁ ଚାହିଁଲେ ସୁହାସିନୀ) ଅକ୍ଷତ, ଗଳି ଗୁଆ ଏକୋଇଶିଟା, ବରକୋଳି ପତ୍ର ଏକୋଇଶିଟା ପାଣି କଖାରୁ ଗୋଟେ, ସଜ ଗୋବର ଟେଳେ, ସିଂଦୂର, କଳାଗାଈର ଘିଅ ସେରେ, ଅତୁଠ ପାଣି ଢାଳେ, ସାହାଡ଼ା ଡାଙ୍ଗ ଗୋଟେ ଆଉ ମଲାଙ୍ଗ ଡାଳ ଗୋଟେ...

(ସୁହାସିନୀ ଗୁଣିବିଦ୍ୟା କରିବା ପାଇଁ ଏଇ ଯୋଜନା କରୁଥିଲା ବେଳେ ନାଟ୍ୟକାର ଉଠିବେ ଓ ଲୁଚିଲୁଚି ପଛପଟର ବାର ଲାଇଟ୍‌ରେ ତିଆରି ଝରକା ସେପଟକୁ ଚାଲିଯିବେ । ଗଲାବେଳେ

ଦୁଇ ହାତକୁ ଚିଲପରି ମେଲାଇ ଉଡ଼ିବା ଅଭିନୟ କରି କରି ଯିବେ। ଖଟ ଉପରେ ଖାଲି ସିଏ ଘୋଡ଼େଇ ହେଇଥିବା ଧଳା ଚାଦରଟା ପଡ଼ିଥିବ ସୁହାସିନୀ ଆଦୌ ଜାଣି ପାରିବେ ନାଇଁଯେ ତାଂକ ସ୍ୱାମୀ ତାଂକ ପଛପଟେ କୁଆଡ଼େ ଅଦୃଶ୍ୟ ହୋଇଗଲେ।)

ସୁହାସିନୀ — କିଂତୁ, ମୁଁ ଏତେ ଜିନିଷ ଏକେଲା ଯୋଗାଡ଼ କରିବି କେମିତି ଯେ...? ତମେ ତମର ଡ୍ରାମା ପିଲାମାନଂକୁ କହିଦିଅ – ଏତିକି ଯୋଗାଡ଼ କରିଦେବେ। ତା'ପରେ ଦେଖିବ... ଖାଲି ଚାରିଆଡ଼େ ତମରି ନାଟକ ହଉଥିବ... କଣ ଶୁଣୁଚ ନା ନାଇମ? (ମୁହଁ ବୁଲେଇ ନାଟ୍ୟକାରକୁ ହଲେଇ ଦେବାକୁ ଗଲାବେଳେ ସୁହାସିନୀ ଆବିଷ୍କାର କଲେ ନାଟ୍ୟକାର ଖଟ ଉପରେ ଶୋଇ ନାହାନ୍ତି। ସେ ବିଶ୍ୱାସ କରିବାକୁ ଚାହିଁଲେ ଯେ ନାଟ୍ୟକାର ନାହାନ୍ତି। କିଂତୁ ବିଶ୍ୱାସ କଲେ ନାହିଁ। ଭାବିଲେ ଯେ ନାଟ୍ୟକାର ଶୋଇଛଂତି। ସେଇଠୁ ସିଏ ଏକ କାଳ୍ପନିକ ନାଟ୍ୟକାରକୁ ଛୁଇଁ ହଲେଇବା ପରି ଅଭିନୟ କରିବାକୁ ଲାଗିଲେ)।

ସୁହାସିନୀ — ଶୁଣୁଚ...? ଏୟ! ନାଟ୍ୟକାର! କୁଆଡ଼େ ଗଲ? ଓଡ଼ିଶା ସାରା... ଚାରିଆଡ଼େ ଖାଲି ତମର ନାଟକ ହବ... ମତେ ଖାଲି ଏତିକି ଜିନିଷ ଯୋଗାଡ଼ କରିଦିଅ। ମୁଁ ଆଜି ରାତି ଆଠଟା ବେଳେ ବୀର ଓଝା ପାଖକୁ ଯିବି। ରାତି ବାରଟା ବେଳେ ଗୋଟେ ମଶାଣି ପୂଜା ହବ। ଗୋଟେ ଛୋଟ ଗଂଜା କୁକୁଡ଼ା କିଣିକି ନେଇ ଆସିବ। ବାସ... ତା'ପରେ ଦେଖିବ... (ପୁଣିଥରେ ଖୋଜିଲେ ନାଟ୍ୟକାର ନାହାନ୍ତି... ବ୍ୟସ୍ତ ହୋଇ ପଡ଼ିଲେ... କାନ୍ଦିଲେ। ବିକଳ ହୋଇ ମେଲୋଡ୍ରାମା କଲେ)

ଏୟ! କୁଆଡ଼େ ଗଲ? (ଲୁହ ପୋଛି ମଂଚ ସାମ୍ନାକୁ ଆସିଲେ) (ପଛପଟେ ବାର୍‌ଲାଇଟ ୨ଟା ଯୋଡ଼ିଲେ ଯେତିକି ଲମ୍ବା, ସେତିକି ଲମ୍ବା, ଫ୍ରେମଭଳି ଦିଶୁଥିବା ଝରକା ପଛପଟେ ଠିଆ ହେଇ ନିଜର ନିରବ ପ୍ରତିକ୍ରିୟା ଶାରୀରିକ ଅଭିନୟର ଭାଷାରେ ପ୍ରକାଶ କରୁଥିବେ)

ସୁହାସିନୀ (ଲୁହ ପୋଛି) କାହିଁକି କାଂଦିବି ? ଯିଏ ଦେଖିବ, କହିବ ମେଲୋ ଆକ୍‌ଟିଙ୍‌!! ସବୁଆଡ଼େ ମୋର ନାଁ ଅଛି – ମୁଁ ଗୋଟେ ଭଲ ବାସ୍ତବବାଦୀ ଅଭିନେତ୍ରୀ ବୋଲି ।

ମୁଁ କଣ ଜାଣିନାଇଁ ? ତମେ ପରା ସବୁକାଳେ ସେମିତି ! ଏଇଠି ବସିଥିବ... ଆଉ ବସି ବସି ଗପର ଜାଲ ବୁଣୁଥିବ ! ତାପରେ ହଠାତ୍‌... ହଠାତ୍ କୁଆଡ଼େ ଘର ଚଟିଆ ପରି ଉଡ଼ିଯିବ ଆକାଶକୁ ଯେ... ମୁଁ ଆଉ ଦେଖି ପାରୁନଥିବି... ହେଇ... ଆକାଶର ସେ ଅଗଣା ଭିତରକୁ । ଏ ଆକାଶରୁ ସେ ଆକାଶକୁ, ଆଉ ସେ ଆକାଶରୁ ଏ ଆକାଶକୁ... କୁଆଡ଼େ ଅଦୃଶ୍ୟ ହେଇଯାଅ ତମେ ?

(ଦର୍ଶକମାନଂକ ମୁଣ୍ଡ ଉପରେ ଥିବା କାଳ୍ପନିକ ଆକାଶରେ ସ୍ୱାମୀଙ୍କୁ ଖୋଜିଲେ ସୁହାସିନୀ । ଏବଂ ଖୁବ୍ ପାଟିକରି ହସିଲେ ନାଟ୍ୟକାର । ସେଇ ବାଚ୍‌ଲାଇଟ୍‌ରେ ତିଆରି ଝରକା ଭିତରେ ଥାଇ)

ସୁହାସିନୀ ଏ ମା' ! କିଏ ଗୋଟେ ହସିଲାଣି !! ଏୟ ! ଭୂତ ହେଇଗଲା ନା କ'ଣ ? ହସୁଚ କୋଉଠୁ ? ସେଇ ଆକାଶରୁ ?

ନାଟ୍ୟକାର ଆଉ କୋଉଠିକି ଯିବି ସୁହାସିନୀ ? କୌଣସି ପାର୍ଥିବ ମୋହ ତ ମତେ ଆକର୍ଷଣ କରି ପାରେନା । ଖାଲି ନାଟକଟିଏ କରେ ।... ଗୋଟେ ରଂଗମଂଚ... ଯାହା ଭିତରର ଆଲୁଅରେ ମୁଁ ବଂଦୀ ହେଇ ରହିଯାଏ... ଆଗରେ ଥାଏ ଗୋଟେ ବଡ଼ ସମାଜ । ମୃତ୍ୟୁ ପର୍ଯ୍ୟନ୍ତ ଲମ୍ବିଥିବା ଗୋଟାଏ ରାସ୍ତା ପରି ମନେହୁଏ ଏ ରଂଗମ□ ଓ କେତେବେଳେ ମନେହୁଏ, ପାଦ ତଳର ମାଟି ପରି... ଆଉ, କେତେବେଳେ ମୁଣ୍ଡ ଉପରେ ଲିଭୁ ନଥିବା ତାରାଭର୍ତ୍ତି ଆକାଶ ପରି... (ଏ ସଂଳାପ କହିଲାବେଳକୁ ସୁହାସିନୀ ତାଂକ କଳ୍ପନା ରାଜ୍ୟରେ ଥିବେ, ଆଉ କୁଆଡ଼େ ଆକାଶକୁ ଚାହିଁ ରହିଥିବେ ।)

ସୁହାସିନୀ ଏ ମା' ! ଏଇଟାତ ତାଂକର ସ୍ୱର ? ହଇଏ... ? ଦୂର ଆକାଶର ତରା... ! ତମେ ଆକାଶରେ ଉଡୁଚ ନା ବୁଢ଼ିଆଣି ଭଳି ଗପର ଜାଲ ବୁଣୁଚବା ?

ନାଟ୍ୟକାର — ସେଇଟାକୁ କୁହାଯାଏ ଖେଚରି ସିଦ୍ଧି । ଆକାଶରେ ଉଡ଼ି ଉଡ଼ି କଳ୍ପନା କରିବାର ବିଦ୍ୟା –

ସୁହାସିନୀ — କଣ କହିଲ ? ଖେଚରି ସିଦ୍ଧି ? ମୁଁ ଆଜି ରାତିରେ ବୀର ଓଝାକୁ ପଚାରିବି ।

ନାଟ୍ୟକାର — ବୁଝି ପାରିବ ନାଇଁ ! ଦିନସାରା କଡ଼େଇ ଆଉ କରଚୁଲି... ଧରି... ଡେକ୍‌ଚି ଆଉ ତସଲାମାନଂକ ସାଂଗରେ ଦୋସ୍ତି କରିବ... ଆଉ ଜାଣିବ କେମିତି ? ଜାଣିବ କେମିତି କଳ୍ପନାର ଆକାଶଟା କେଡ଼େ ଚଉଡ଼ା – ତମେ ତ ମୋ' ସାଂଗରେ ସବୁ ସଂପର୍କ ଛିଣ୍ଡେଇ ଦେଇଚ...

ସୁହାସିନୀ — କେମିତି ଛିଣ୍ଡେଇ ଦେଲି ? ମୁଁ କଣ ପ୍ରତିଦିନ ତମର ଗୋଡ଼ ଚିପି ଦଉନି ? ଏଁ ? ଲାଇଟ୍ ଲଗେଇ ଚିପୁଚି... ଲିଭେଇଲା ପରେ ବି ଚିପୁଚି, କାଇଁ, ଏଇ ଯୋଉ କଳ୍ପନା କଥାଟା କହୁଚ – ସେଇଟା ତ କାଇଁ ହାତରେ ପଡୁନି ! କେମିତିଆଟେ ବା ତମର କଳ୍ପନା ? ସେଇଟା ଖାଲି ତମ ନାଟ୍ୟକାରମାନଂକର ଅଛି ନା ସମସ୍ତଙ୍କର ? ହଇଏ !

ନାଟ୍ୟକାର — ମୁଁ ସେଗୁଡ଼ା କେମିତି ଜାଣିବି ସୁହାସିନୀ ? ମୋ' ଭିତରେ ଏମିତିଗୁଡ଼ାଏ ଅଦେଖା ଜିନିଷ ପଡ଼ିଛି । ଭଂଗାରୁଜା ହେଇ... ମନର କୋଉ ଗୋଟେ ଗୋଦାମ ଘରେ ! ଏତେ ଦିନ ହେଲା ପଡ଼ିଚି ଯେ ଆଉ ଚିହ୍ନି ହଉନି ସେ ଗୁଡ଼ା ମୋର ବୋଲି । ଜାଣିଚ ସୁହାସିନୀ ! କାଲି ମୋ ନିଜ ନାଟକଟାକୁ ବାରମ୍ବାର ପଢ଼ିଲି... କିଂତୁ ଜାଣି ପାରିଲି ନାଇଁ... ନାଟକଟା ମୁଁ ଲେଖିଚି ନା ଆଉ କିଏ ଲେଖିଚି ! !

(ହଠାତ୍ କଲିଂ ବେଲ୍ ବାଜିଲା । ସୁହାସିନୀ ଦୁଆର ଖୋଲିଲେ ଏବଂ ପ୍ରବେଶ କଲେ ଅରବିନ୍ଦ । ଅରବିନ୍ଦଙ୍କ ହାତରେ ଗୋଟେ ଫାଇଲ ଭର୍ତ୍ତି ବ୍ୟାଗ ଓ ପଛପଟେ କଂପ୍ୟୁଟର ବ୍ୟାଗ୍ । ସାଂଗରେ ଚଇତନ ବେହେରା । ଯାତ୍ରାପାର୍ଟି ମ୍ୟାନେଜର । ବୟସ

ପାଖାପାଖି ଚାଳିଶି ଓ ପରିଧେୟ ସଫାରି ସୁଟ୍ । ତାଂକ ହାତରେ ବି ଗୋଟେ ଆଟାଚି)

ଅରବିନ୍ଦ ଭାଉଜ ନମସ୍କାର ! ଭାଇ ? ଭାଇ କୁଆଡ଼େ ଗଲେ ? ମୋ' ସାଂଗରେ ଜଣେ ଅତିଥି ଅଛଂତି । ନୂଆଲୋକ ।

ସୁହାସିନୀ (ଠାରିକି ପଚାରିଲେ କିଏ ବୋଲି)

ଅରବିନ୍ଦ ଭାଉଜ - ଇଏ ହଉଛଂତି ଚୈତନ୍ୟ ବେହେରା... ଭବାନୀ ଗଣନାଟ୍ୟର ମ୍ୟାନେଜର ।

(ଚୈତନ୍ୟ ସୁହାସିନୀଙ୍କ ପାଦ ଛୁଇଁଲେ ।) ଭାଇଙ୍କ ପାଖକୁ ଆସିଛଂତି !

ସୁହାସିନୀ ଭାଇ ? ଭାଇ କାହାନ୍ତି ? ସକାଳୁ ସକାଳୁ କୁଆଡ଼େ ହଜି ଯାଇଛଂତି ଯେ ପତ୍ତା ମିଳୁନି !

ଅରବିନ୍ଦ କୋଉଠି ଗୋଟେ ଥିବେ ନା... ପତ୍ତା କଣ ମିଳୁନି ? (ଖୋଜିଲେ - "ଭାଇ ! ଭାଇ ! ଏବଂ ହଠାତ୍ ତାଂକୁ ପାଇ) ହେଇ ! ଭାଇ ତ ଏ ଆଲୁଅର ଝରକା ପାଖରେ ଠିଆ ହେଇଛଂତି ! (ଅରବିନ୍ଦ ଗଲେ ଓ ନାଟ୍ୟକାରଙ୍କୁ ଭିଡ଼ି ଆଣିଲେ)

ସୁହାସିନୀ ଇମା' ! ତମେ ସେଇଠି ଥିଲ ? ବୁଝ ବୁଝ ! ଏମାନଂକ କଥା ବୁଝ ! ମୁଁ ଚା' ଫା' କରୁଚି (ଯାଉଥିଲେ)

ଚୈତନ୍ୟ ସାର୍ ନମସ୍କାର ! ସଂକ୍ଷିପ୍ତରେ - ମୁଁ ଚୈତନ୍ୟ ବେହେରା... ମା' ଭବାନୀ ଗଣନାଟ୍ୟର ମ୍ୟାନେଜର ! ଆପଣଂକ ପାଖକୁ ଆସିଚି, ଖଣ୍ଡେ ସ୍କ୍ରିପଟ୍ ଦେବେ !

(ସୁହାସିନୀ ଅଟକି ଗଲେ । ପଛକୁ ଫେରି ଚାହିଁଲେ)

ସୁହାସିନୀ କଣ କହିଲେ ? ସ୍କ୍ରିପ୍ଟ ? ଇଏ ଲେଖିବେ ?

ଚୈତନ୍ୟ ଆଜ୍ଞା ମାଡ଼ାମ୍ !

ସୁହାସିନୀ ଇଏ ? ଟିକିଏ ରୁହନ୍ତୁ... ମୁଁ ଟିକିଏ ପରୀକ୍ଷା କରି ଦେଖେ...

(ତାଂକର ଶରୀରର ବିଭିନ୍ନ ଯାଗାକୁ ଛୁଇଁଲେ) ଇଏ ସତରେ ମୋ' ସ୍ୱାମୀ... ନା ତାଂକର ଭୂତ !

ଅରବିଂଦ ଭାଉଜ ! ଭାଇଙ୍କୁ ତମେ ଭୂତ ବୋଲି କହୁଚ !

ସୁହାସିନୀ ସ୍‌ସ୍‌ସ୍ !! (ଆଗେଇ ଗଲେ ଓ ନାଟ୍ୟକାରଙ୍କୁ ଛୁଇଁ ପରୀକ୍ଷା କଲେ) (ଦୁଇ ତିନିଥର ତାଳି ମାରି "ହାସ୍" ବୋଲି ଶବ୍ଦ କଲେ । ତା'ପରେ କୁଣ୍ଠାର ସହ) ଚଳିବ !

ଅରବିନ୍ଦ କ'ଣ ଚଳିବ ମ !

(ପାଖକୁ ଯାଇ ଫୁସ୍ ଫୁସ୍ ସ୍ୱରରେ କହିବେ)

ଯାତ୍ରା ପାର୍ଟି ମେନେଜର ଆସିଛଂତି... ତମେ ତାଂକ ଆଗରେ ଭାଇଙ୍କୁ ଭୂତ ବୋଲି କହୁଚ ?

ସୁହାସିନୀ ଭୂତ ନୁହନ୍ତିତ ଆଉ କିଏ ତମ ଭାଇ ? କଥା କହୁଥିବେ... ହଠାତ୍ କୁଆଡ଼େ ସେ ଆକାଶ ଆଡ଼େ ଉଡ଼ି ପଳେଇବେ ! କଙ୍କି, ପ୍ରଜାପତି, ଘରଚଟିଆଙ୍କ ଭଳି । ଇଏ ନାଟକ ଲେଖିବେ ? ତମେ ବାଇଆ ହେଲ ଅରବିଂଦ ?

ଅରବିଂଦ ଏଃ ! ତମେ ଚାଲିଲ ଭାଉଜ ! ଭିତରକୁ ଚାଲ... ଚୈତନ୍ୟ ବାବୁଙ୍କ ପାଇଁ ଜଳଖିଆ ବ୍ୟବସ୍ଥା କର ।

(ଅରବିନ୍ଦ ଓ ସୁହାସିନୀ ଭିତରକୁ ଗଲେ । କୌତୁହଳ ମୁଦ୍ରାରେ ଚୈତନ୍ୟ ବାବୁ ତାଂକ ପଛେ ପଛେ ଗଲେ । ସେମାନେ ସତରେ ଗଲେ ବୋଲି ନିଶ୍ଚିତ ହୋଇ ଫେରିଲେ)

ଚୈତନ୍ୟ ସାର୍ ବହୁତ କାମ, ସଂକ୍ଷିପ୍ତରେ କହୁଚି... ଏ ବର୍ଷ ଆମ ପାଇଁ ଗୋଟେ ଝକାସ୍ ସ୍କ୍ରିପ୍ଟ ଲେଖିବେ ! ସାର୍, ଜୟୀ ପଣ୍ଡା ହିରୋ ଅଛି... ଚୁଲ୍‌ବୁଲି ହିରୋଇନ୍ କାମିନୀ... ଫିଉଜ୍ ଉଡ଼େଇଦବ ସାର୍ !

ନାଟ୍ୟକାର ଆଉ ଭିଲେନ୍ ? ଭିଲେନ୍ କିଏ ?

ଚୈତନ୍ୟ	ଜହର ଦାସ୍ ! ନଟ ସାମନ୍ତ ଅପେରାରୁ ଆଇଚି ସାର୍... ୩୫ ଲକ୍ଷ ନବ... ହେଲେ ଗେଟ୍‌ରେ ଲେଖିବାକୁ ପଡ଼ିବ ସଂକ୍ଷିପ୍ତରେ । ଗର୍ଭିଣୀ ସ୍ତ୍ରୀ ଆଉ ଛୁଆମାନଂକର ପ୍ରବେଶ ନିଷେଧ । ଲେଖନ୍ତୁ ସାର୍ ଝକାସ୍ ନାଟକ... (ପକେଟରୁ ଗୋଟେ ବିଡ଼ା ନୋଟ୍ ବାହାର କରି) ଏଇ ରଖନ୍ତୁ ସାର୍ ପଚାଶ ଟଂକା - ସଂକ୍ଷିପ୍ତରେ ! କେବେ ଆସିବି ? ଟଙ୍କାଟା ଗଣି ନିଅନ୍ତୁ । ପଚାଶ ଅଛି । ସ୍କ୍ରିପ୍‌ଟ ଦେଲା ବେଳକୁ ଆଉ ପଚାଶ ।

ନାଟ୍ୟକାର	ଆଜି ହେଲା ମେ' ତେର ତାରିଖ । ଆପଣ ଜୁନ୍ ୧୩ ବେଳକୁ ଆସନ୍ତୁ ।

ଚୈତନ୍ୟ	ଜୁନ୍ ତେରରୁ ରିହାରସାଲ ଆରମ୍ଭ । ଫାଷ୍ଟ ବହି ଆପଣଂକର । ନାଁଟା ଆଗରୁ କହିଦେବେ । ଖବର କାଗଜରେ ଦବାକୁ ପଡ଼ିବ । ମୁଁ ମଝିରେ ମଝିରେ ଆସି ମୁହଁ ଦେଖେଇ ଯାଉଥିବି ସାର୍ ! ଜୟକଳା ! (ପାଦ ଛୁଇଁଲେ । ମୁଣ୍ଡିଆ ମାରି ଆସିଲେ)

ନାଟ୍ୟକାର	ଜୟକଳା ! (ଚୈତନ୍ୟକୁ ବିଦାୟ ଦେଇ ୱିଙ୍ଗସ୍ ପାଖକୁ ଆସିଲେ ଓ ଭିତରେ ଥିବା ସୁହାସିନୀଙ୍କୁ ଡାକିଲେ) । ସୁହାସିନୀ : ଏଇ ଟଂକାଟା ରଖ !

ସୁହାସିନୀ	(ଭିତରେ ଥାଇ) ସେଇଠି ରଖିଦିଅ । ମୋ' ଡ୍ରେସିଂ ଟେବୁଲ ଉପରେ ।

(ନାଟ୍ୟକାର ଗଲେ ଓ ମଂଚ ଅଂଧକାର ହେଲା)

୦୦୦



## ଦୃଶ୍ୟ – ୩

(ମଂଚ ଅଂଧାର ହେଲା । କିଂତୁ ପଛପଟେ ବାର୍ ଲାଇଟ୍‌ରେ ତିଆରି ସେଇ ଝରକାଟା ଆଲୋକିତ ହେଲା । ତା’ ପଛେପଟରେ ଥିବା ପରଦାଟାର ରଂଗ ନାଲି । ତାରି ଭିତରେ ଆବହ ସଂଗୀତ ଏବଂ କେହି ଜଣେ ଆସି ସେ ଝରକା ସାମ୍ନାରେ ଗୋଟେ ଚାରିପଟକୁ ଘୁରୁଥିବା ଚୌକୀ ଆଣି ପକେଇଲା । ତା’ପରେ ଭିତରକୁ ଗଲା ଓ ଗୋଟେ ପ୍ଲାଷ୍ଟିକ୍ ଚେୟାର ମୁଣ୍ଡରେ ଧରି ଆସିଲା । ତାକୁ ବାଟ କଢ଼େଇ ଆଣିଲେ ସୁହାସିନୀ । ଦକ୍ଷିଣ ପଟର ନିମ୍ନମଂଚ (Down right)ରେ ଚୌକୀଟା ରଖିବା ପାଇଁ ନିର୍ଦ୍ଦେଶ ଦେଲେ ।)

**ସୁହାସିନୀ** ତମେ ଏଇଠି ବସିବ । ବସ । (ବସିଲା) ଜମ୍ମା ପାଟିଖୋଲିବ ନାଇଁ । ଏକଦମ୍ ଚୁପ୍‌ଚାପ୍ ହେଇ ବସିବ । ପାଟି ଖୋଲିଲେ ଚାକିରୀ ଯିବ । ତମ ମାଲିକ ଜଣେ ନାଟ୍ୟକାର । ତାଂକର ମୁଡ୍ ଖରାପ ହେଇଯିବ ! ହେଲା ? (ଠିଆ ହେଇ ପଡ଼ିଲା ଦରୱାନ) (ସୁହାସିନୀ ଯାଉଥିଲେ । ଫେରିଲେ) ତମେ ହଉଚ ଦରୱାନ୍ ! ନାଟ୍ୟକାର ମୁଣ୍ଡ ଭିତରର ଦରୱାନ୍ । (ଆବହ ସଂଗୀତ)

ବସ ! ତମ ମାଲିକ ନାଟକ ଲେଖୁଲେଖୁ ହଠାତ୍ ସ୍ୱପ୍ନ ଆଉ କାହାଣୀ ଖୋଜିବାକୁ କୁଆଡ଼େ କୁଆଡ଼େ ପଳେଇ ଯାଆନ୍ତି ।

ଦରଓ୍ୱାନ ଆଗଁୟା ?

ସୁହାସିନୀ ଅଦୃଶ୍ୟ ହେଇ ଯାଆନ୍ତି । ତମ କାମ ହେଲା ତାଂକୁ ଅଟକେଇବ ! ତାଂକ ମୁଣ୍ଡ ଭିତରେ ଯୋଉ ଟ୍ରାଫିକ୍ ଚାଲିଚି । ତମେ ତାର ପୋଲିସ୍ ! ଯେତେ ସବୁ ଅବାନ୍ତର କାହାଣୀ ଖଣ୍ଡ ତାଂକ ମୁଣ୍ଡ ଭିତରକୁ ଆସିବେ, ତମେ ତାଂକୁ ଅଟକେଇବ ।

ଦରଓ୍ୱାନ୍ (ହଠାତ୍ ଠିଆ ହେଲା ଓ ସାଲ୍ୟୁଟ୍ ମାରିଲା ସୁହାସିନୀ ଚାଲିଯାଉଥିଲେ । ପୁଣି ଫେରିଲେ) ତମ ଦରମା ମାସକୁ ପାଞ୍ଚହଜାର । ଖାଇବା ଫ୍ରି... ପୋଷାକ ବି ମୁଁ ଦେବି । (ବ୍ୟାଗରୁ ଗୋଟେ ପିସ୍ତଲ ବାହାର କଲେ) ଏ ପିସ୍ତଲଟା ରଖ । ଯଦି ଆମ ନାଟ୍ୟକାର ବାବୁଙ୍କ ମୁଣ୍ଡ ଭିତରକୁ ବେତାଳ, ପିଶାଚ, ରାକ୍ଷସ, ଗୁହ୍ୟକ ବିଦ୍ୟାଧର କି ପନ୍ନଗ କିଏ ପଶେ - ତମେ ତାକୁ ଗୁଳି କରିଦବ... ଯଦି ନ ମରେ ଖବର ଦବ ! (ଯାଉଥିଲେ, ପୁଣି ଫେରି ଆସିଲେ) । ଏ କଥା ସିକ୍ରେଟ୍ ରଖିବ । କାହାକୁ କିଛି କହିବନି, ଯଦି କିଏ ବେଶୀ ପଚରାପଚରି କରେ ଖାଲି ହସିବ - ହୁ ହୁ ହା ହା ହେଇ ଜୋର୍‌ରେ ହସିବ... ଯାତ୍ରାପାର୍ଟି ଷ୍ଟାଇଲ୍‌ରେ ! ହେଲା ?

ଦରଓ୍ୱାନ୍ (ସାଲ୍ୟୁଟ୍ ମାରିଲା)

ସୁହାସିନୀ ବସ । (ଚାଲିଗଲେ ।)

(ଆବହ ସଂଗୀତ । ଦରଓ୍ୱାନ୍ ବସିଲା)

ନାଟ୍ୟକାର ଆସିଲେ ଟିକିଏ ପରେ । ସେଇଠି ବସିଲେ । ସେ ଚୌକି ପାଖରେ ଗୋଟେ ମାଇକ୍ରୋଫୋନ୍ ଲାଗିଥିବ । ମାଇକ୍ରୋଫୋନ୍‌ଟା କୌଣସି ତାର ସହିତ ସଂଯୁକ୍ତ ହୋଇ ନଥିବା ଆବଶ୍ୟକ । କାରଣ ନାଟ୍ୟକାର ସେଇ ଚକଲଗା ଚୌକୀରେ ଘୁରି ଘୁରି ସଂଳାପ କହିବେ । ଆଲୋକ ଆସିଲା ବେଳକୁ ସେ ବାର୍ ଲାଇଟ୍‌ରେ ତିଆରି ଆଲୋକର ଫର୍ଦ୍ଦା

ଆଡ଼କୁ ଚାହିଁ ବସିଛନ୍ତି ଏବଂ ଚୌକିର ପଛପଟ ଏତେ ଉଚ୍ଚ ଯେ ସେ ଦର୍ଶକମାନଂକୁ ଦୃଶ୍ୟ ହେଉନାହାନ୍ତି । ଅଥଚ ଶୁଭୁଚି ତାଂକ ସ୍ୱର । ଦରଓ୍ୱାନ ସେଇଠି ବସିଛି ।

ଏଇ ଯୋଉ ଦୁଇମିନିଟ୍ ମଂଚ ଅଂଧାର ହେଲା ଓ ତାରି ଭିତରେ ସ୍ୱିଭେଲ୍ ଚୌକି ପଡ଼ିଲା ଓ ନାଟ୍ୟକାର ଆସି ବସିଲେ ଚୌକିରେ ହାତ ପାଖରେ ଗୋଟେ କଡ୍‌ଲେସ୍ ମାଇକ୍ରୋଫୋନ୍ ଖଂଜା ହେଲା, ତାରି ଭିତରେ ଗୋଟିଏ ଗୀତ ଶୁଭିବ । ଝିଅ କଂଠରେ କୋରାସ୍ ଓ ତାରି ଉପରେ ପୁଅ କଂଠର ଗୀତ -

ଯାହା ମୁଁ କରଇ ଯାହା ମୁଁ କହଇ
ଯାହା ମୁଁ ଚିଂତଇ ମନେ
ଜଗତର କର୍ତ୍ତା ପରମ ଈଶ୍ୱର
ଜାଣୁଛଂତି ପ୍ରତିକ୍ଷଣେ ॥

(ତାପରେ ମାଇକ୍ରୋଫେନ୍ ଧରି ନାଟ୍ୟକାର କହିଲେ । ରେଡ଼ିଓ ନାଟକରେ ସ୍ୱର ପ୍ରକ୍ଷେପଣ କଲାପରି)

ନାଟ୍ୟକାରର ସ୍ୱର: ମୋ' ସାମ୍ନାରେ ଗୋଟେ ଆଳୁଅର ଝର୍କା, ଏଇ ଯୋଉ ଆଲୁଅ ଦିଶୁଚି ସେଇଟା ପଡୁଚି ମୋର ମୁଣ୍ଡ ଭିତରେ (ଆବହ ସଂଗୀତ) ଟିକିଏ ଭଲ ଭାଷାରେ କହିଲେ - ମନର ଅରଣ୍ୟ ଭିତରେ... ସେଇଠି ଫୁଟୁଛଂତି ଗଦାଗଦା ବନଫୁଲ... ତାରି ଭିତରେ ଦିଶୁଚି ଅନେକ ଉଠାଣି ଆଉ ଅନେକ ଗଡ଼ାଣି... ଅଂଧାରର ଉପତ୍ୟକା ଆଉ ରହସ୍ୟ ଭଳି ଦିଶୁଥିବା ପାହାଡ଼ । ମୋ' ଭିତରେ ଲୁଚି ରହିଛଂତି ଅନେକ ଚିତାବାଘ ଆଉ ଭାଲୁ... ସିଂହ ଓ ଅଜଗର ସାପ... ଅନେକ ଆଦିମତା ଓ ଅନେକ ସଭ୍ୟତା... ଅନେକ ଆଫ୍ରିକା... ଆଉ ଅନେକ ଅନେକ ମହେଞ୍ଜୋଦାରୋ (ଆବହ ସଂଗୀତ)

(ଆବହ ସଂଗୀତରେ ଗୋଟାଏ "କୋରାଲ୍ ହମିଂ" ଲୁଭିଲା । ଏବଂ ଆଲୁଅ ସ୍ୱଷ୍ଟ ହେଲା । ପ୍ରବେଶ କଲେ ଅରବିଂଦ । ଭିତରୁ ଆସିଲେ । ତାଂକର ବୟସ କମ୍ । ସୁଂଦର ଭଦ୍ର ଓ ଅଭିଜାତ ଚେହେରା ।)

ଅରବିଂଦ — କଣ ଭାଇ, ପଇସା ଦେଲା ସେ ଯାତ୍ରାବାଲା ? କେତେ ଦେଲା ? ଲକ୍ଷେ ଖଣ୍ଡେ ଦେଲା ନା ନାଇଁମ !

ନାଟ୍ୟକାର — କ'ଣ କହିଲୁ ? ଲକ୍ଷେଟଂକା ? (ଚୌକୀ ଉପରୁ ଓହ୍ଲାଇ ଆସିଲେ ୧୨୦ ବର୍ଷ ବୟସ୍କ ନାଟ୍ୟକାର । ଆସିଲାବେଳେ ଚୌକୀରେ ଝୁଂଜା ହେଇଥିବା ମାଇକ୍ରୋଫୋନ୍‌ଟାକୁ ଥୋଇଦେଇ ଆସିଲେ) ହ୍ୱାଟ୍ ଡୁ ୟୁ ମୀନ୍ ? ଲକ୍ଷେ ଟଂକାରେ ମୋର କଳ୍ପନା ଶକ୍ତିଟାକୁ ଯାତ୍ରାବାଲା ପାଖରେ ବିକ୍ରୀ କରିଦେଇଚି ? ହ୍ୱାଟ୍ ଡୁ ୟୁ ମୀନ୍ ? (ଅରବିନ୍ଦର ବାମ କାଂଧ ପାଖକୁ ଚାପୁଡ଼ାଏ ମାରିଲେ) କ'ଣ ଭାବିଲୁ ତୁ' ମତେ ? ମୁଁ ଗୋଟେ ମଣିଷ ନା ପଣ୍ୟ ? ଏଁ ? ମୁଁ ଗୋଟେ ଉପଭୋକ୍ତା ସାମଗ୍ରୀ ? (ଖୁବ୍ ରାଗିଯାଇ ଗୋଡ଼ କଚାଡ଼ି) ନୋ ! ନେଭର ! ଏ ଦେଶର ଦର୍ଶକମାନଂକୁ ସେଣ୍ଟିମେଣ୍ଟ ଦର୍କାର, ଶସ୍ତା ସେଣ୍ଟିମେଣ୍ଟ, ଖବରକାଗଜବାଲାଙ୍କ ପାଥେଟିକ୍ ଖବର... ରଂଗୀନ୍ ଅଭିଜ୍ଞତା... ପ୍ରତି ଦୃଶ୍ୟରେ ଏମାନଂକ ଗୋଟେ ଗୋଟେ ପାଇଟିଙ୍ଗ୍ ଦର୍କାର – ଚରିତ୍ର ଚିତ୍ରଣ ନୁହେ... ଏମାନଂକୁ "ସିକ୍ୱେନ୍ସ" ଦରକାର – ଜୀବନ ସହିତ ଲଢ଼ିବାର ସାହସ ନୁହେ... ଆଉ ମତେ, ମତେ ଏଗୁଡ଼ାକୁ ବିକିବାକୁ ପଡ଼ିବ !

ଅରବିନ୍ଦ — ମୁଁ ବି ଜାଣେ ଭାଇ ! ତମେ ଜାଣ ମୁଁ ବି ନାଟକ ଲେଖେ – କିଂତୁ ମୋ' ନାଟକ ରବୀନ୍ଦ୍ର ମଣ୍ଡପରେ ଷ୍ଟେଜ୍ ହୁଏ... ଯାତ୍ରାରେ ନୁହ । ସେ ଫାଲ୍‌ତୁ ଯାତ୍ରା ପାଇଁ ଯେତେ ପ୍ରକାର ଚରିତ୍ର ତିଆରି କଲେ ବି ସେମାନେ ସେଇ ଗୋଟିଏ ପ୍ରକାର

ମଡୁଲେଶନ କରନ୍ତି। କିଛି ଜଣା ନାହିଁ। ତମେ ସେମାନଂକ ପାଇଁ ଲେଖି ଲେଖି ତମ ଭିତରର ଚଂଦନ କାଠକୁ ଖାଲି ଘୋରି ଚାଲିଛ... କିଂତୁ ସେ ଭିତିରି ଚଂଦନର ବାସ୍ନା କାହାରି ପାଖରେ ପହଂଚି ପାରୁନି। ହୁଃ! କି ଅସହାୟ ଅବସ୍ଥା!! ପଇସା ନେଇ ଏଗୁଡ଼ା କରୁଚ ତମେ? ଛି?

(ପ୍ରବେଶ କଲେ ସୁହାସିନୀ। ହାତରେ ଦୁଇ କପ୍ ଚା' ଧରିଛଂତି)

ସୁହାସିନୀ ଏ...ଏ...ଏ... ତମେ ଦି ଭାଇ ଗଣ୍ଡଗୋଳ କରିବ ଆଉ ମୁଁ ହୁଇସିଲ୍ ମାରି ଫୁଟ୍‌ବଲ୍ ଖେଳର ରେଫେରି ହେବି? ଚା' ପିଅ! ନିଅ... ତମେ ଦି' ଜଣ ପରା ଗୋଟେ ଘରର ଦି' ଭାଇ? ଗଣ୍ଡଗୋଳ କ'ଣ। ଦିଜଣ ଯାକ ନାଟକ ଲେଖୁଚ ପରା? ଜାଣିନା? ତମ ନାଟ୍ୟକାରମାନଂକ ଦେଇ କିଛି ହୁଏନା। ତା'ଠୁ ଭଲ କବିତା ଲେଖ ଆଉ ପୁରସ୍କାର ପାଅ – ମିଳିମିଶି ଏକାଠି କାମ କର!

ନାଟ୍ୟକାର (ରାଗିଗଲେ) ଏକାଠି? ଏକାଠି ନାଟକ ଲେଖିବୁ ଆମେ ଦି' ଜଣ? ଏଇଟା କଣ ରୋଷେଇ ହେଇଚି? ଜଣେ ପରିବା କାଟିଦବ, ଆଉ ଜଣେ ସନ୍ତୁଳି ଦବ ତ ଆଉ ଜଣେ ପାଣି ଦେଇଦବ? ଷ୍ଟୁପିଡ୍! (ଉଠି ପଡ଼ିଲେ ବସିବା ଚୌକିରୁ)

ସୁହାସିନୀ ବସ। ଉଠିଲ କାହିଁକି? ତମକୁ ଆସି ଶହେ କୋଡ଼ିଏ ବର୍ଷ ହେଲାଣି। କିଂତୁ ପ୍ରକୃତି ଛାଡ଼ିନି। ଭାବୁଚ ଏବେ ବି ସେମିତି ଟୋକା ହେଇ ରହିଚ?

ନାଟ୍ୟକାର ନା! ମୁଁ ଟୋକା ନୁହେ। କଳି ଯୁଗରେ ଶହେ କୋଡ଼ିଏ ବର୍ଷ ବଂଚିବା ଖୁବ୍ ଗୋଟେ ବଡ଼ କଥା ସୁହାସିନୀ। କିଂତୁ, ତମେ କଣ ଜାଣ... ମାନସିକ ବୀର୍ଯ୍ୟ କ୍ଷରଣ ନହେଲେ ନାଟକଟେ ଲେଖା ହେଇ ପାରିବନି ବୋଲି? ଏ ବୟସରେ ମୋର ଆଉ ଚେତନାର ବୀର୍ଯ୍ୟ କ୍ଷରଣ ହବ କେମିତି?

ସୁହାସିନୀ ସେଇଥି ପାଇଁ ତ କହୁଚି ! ଏତେ ଟେନ୍‌ସନ୍ ନିଅନି ଆଉ ଅରବିନ୍ଦଙ୍କ ସାଂଗରେ ମିଶି ଏକାଠି କାମ କର ! (ଚାଲିଗଲେ ଭିତରକୁ)

ନାଟ୍ୟକାର ବାଃ । ଭଲ ! ! ୟାସାଂଗରେ ମିଶି କାମ କରିବି ! ଏଇଟା ଆମର ଯାତ୍ରା ନାଟକ ବିଷୟରେ କ'ଣ ଜାଣେ ? (ଆଗେଇ ଗଲେ ସୁହାସିନୀ ଆଡ଼କୁ, ସୁହାସିନୀ ଭିତରେ ରୋଷେଇ ଘର ପର୍ଯ୍ୟନ୍ତ ଚାଲି ଯାଇଥିଲେ । ତେଣୁ ଫେରି ଆସିଲେ) ହୁଁଃ । ଏଇଟା ରବୀନ୍ଦ୍ର ମଣ୍ଡପରେ ନାଟକ କରେ । କେମିତିଆ ନାଟକ ? ଯୋଉଥିରେ କାହାଣୀ ନଥିବ, ଚରିତ୍ର ସଂଳାପ ଘୋଷିନଥିବ ଆଉ ମ୍ୟୁଜିକ୍ ବାଲା ରିହାରସଲ ଦେଖି ନଥିବେ । ପଚାରିଲେ କହିବ – "ଏ ଗୁଡ଼ା ବୌଦ୍ଧିକ ନାଟକ । ତମେ ଯାତ୍ରାବାଲା ବୁଝି ପାରିବ ନାହିଁ ।" ଲାଜ ଲାଗୁନି ତମମାନଂକୁ ?

ଅରବିଂଦ ଆଉ ତମେ ନ ହେଲେ ଯୋଉ ନାଟକ ଗୁଡ଼ାକ ଲେଖି ପକଉଚ ! ଝକମକ ଆଲୁଅ ପଡୁଥିବ ଗୋଟେ ଖୋଲା ମଂଚରେ... ଆଉ ହିରୋ - ହିରୋଇନ୍ ଡୁଏଟ୍ ଗୀତ ଗାଇ ମଂଚସାରା ଡେଉଁଥିବେ । ତାଂକ ସାଂଗରେ ଆଉ ଦଶଟା ଡ୍ୟାନ୍ସ ଝିଅ ନାଚୁଥିବେ । ତାପରେ ପ୍ରେମ ହବ ଆଉ ଗୋଟେ ଶାହାନାଇ ବାଜି ବାହାଘର ହବ । ତା'ପରେ ହିରୋ - ହିରୋଇନ୍‌ଙ୍କର ଗୋଟେ ହନିମୁନ୍ ହବ । ଆଉ ହଠାତ୍ ହିରୋଇନ୍ ଆବିଷ୍କାର କରିବ ହିରୋର ଗୋଟେ ହାତ ନାଇଁ । ଚମକି ପଡ଼ିବ ଆଉ ଚିତ୍କାର କରି କହିବ - ନା ! ! (ଖୁବ୍ ଜୋର୍‌ରେ ହସିବ ଅରବିନ୍ଦ) ଆବର୍ଜନା । ଏଗୁଡ଼ାକ ହଉଚି ଆମ ସମୟର ସାଂସ୍କୃତିକ ଆବର୍ଜନା ! !

ନାଟ୍ୟକାର କଣ ଆଉ କରିବୁରେ ଅରବିଂଦ ? ଯାତ୍ରା ନାଟ୍ୟକାରମାନଂକର ତ ଷ୍ଟକ୍ ସରିଗଲା । ଯୋଉ ଗୋଟେ ଯୋଡ଼େ ମୁଠ୍ ଫରକା

ଥିଲେ – ପଇସା ପଇସା ହେଇ ତାଂକର ମୁଣ୍ଡ ଟାଲ୍ ହେଇଗଲା । ଏବେ ହବ କେମିତି ?

ଅରବିନ୍ଦ — କପି ! କପି କର ! କବିମାନେ ବଂଗଳା ଆଉ ହିନ୍ଦୀରୁ ଲାଇନ୍ ଉଠେ‌ାଉଛଂତି ।

ନାଟ୍ୟକାର — ଏଇଠି ଉଠେଇବା ପାଇଁ ଲାଇନ୍ କାହିଁ? ବଂଗଳା ମାଲ୍ ତ ଚାଲୁନି... ହିନ୍ଦୀ ଫିଲ୍ମ ତ ଦେବାଳିଆ... ତେଲୁଗୁ ତାମିଲ ବୁଝାପଡୁନି...

ଅରବିନ୍ଦ — ଆଉ ପଚାଶ ହଜାର ଆଡ୍‌ଭାନ୍ସ ନେଇଗଲ କେମିତି? ଏଁ? ଏବେ କରିବ କଣ? ମତେ ଛାଡ଼ ! ମୁଁ ଗୋଟେ ଯାତ୍ରା ଲେଖି ଦେବି !

ନାଟ୍ୟକାର — କ'ଣ କହିଲୁ? ତୁ' ଲେଖିବୁ? ମହାନ ମହାନ ମୁଣ୍ଡିମାନେ ଆସି ପାରିନାହାନ୍ତି । ତୁ' ଏମିତି କିଏ କି? ଶିଳ ଶିଳୁପା ଗଗନରେ ଉଡ଼ିଲେଣି ।

ଅରବିଂଦ — ବଂବେରେ ଥିଲି । ଚୋପ୍ରା ସାହବଙ୍କ ୟୁନିଟ୍‌ରେ । ହିନ୍ଦୀ ସିରିଏଲ୍‌ର ୫ଟା ଏପିସୋଡ଼ର ମୁଁ ଡିରେକ୍ଟର !

ନାଟ୍ୟକାର — ସେଗୁଡ଼ା ଚାଲିବନି ! ଫାଲ୍‌ତୁ ଷ୍ଟୋରୀ ! ଆମର ଏମିତି ଘଟଣା ଦରକାର, ଯୋଉଟା କେବେ କୋଉଠି ଘଟିନଥିବ !

ଅରବିନ୍ଦ — ମୁଁ ଖବର କାଗଜରୁ ଷ୍ଟୋରୀ ନେବି ! ଜୋକବଂଧ ଗାଁର ବାରବର୍ଷର ଝିଅ ବନିତା... ନିଜ ଦେହରେ କିରାସିନୀ ଢାଳି ଆତ୍ମହତ୍ୟା କରିଦେଲା, ବୋପା ତାର ଖାତା କଲମ କିଣି ପାରିଲା ନାହିଁ... ଗପର ନା "ଭିନ୍ନ ଏକ ରେବତୀ" – ସାତ ଅକ୍ଷର... ସୁପରହୀଟ୍ !

ନାଟ୍ୟକାର — ଚାଲିବ ନାଇଁ ! ଖବର କାଗଜ ଷ୍ଟେରୀ ଚାଲିବ ନାଇଁ ! ଏମିତି କ୍ୟାରେକ୍ଟର ଦର୍କାର ଯୋଉ ଶଳା ପୃଥିବୀରେ ଜନ୍ମ ହେଇନଥିବ...

ଅରବିନ୍ଦ — ଜାଣିଚି ଭାଇ! ସେ ଶଳାଙ୍କୁ ଜାଣିଚି। ପଶ୍ଚିମ ଦିଗରୁ ପ୍ରେମ କରି ଦିଇଟା ବାହା ହେଇଗଲେ ଆଉ ହନିମୁନ୍ ରାତିରେ ଜଣା ପଡ଼ିଲା ଟୋକାଟାର ଗୋଟେ ହାତ ନାଇଁ। ରାସ୍କେଲ୍! ଏଗୁଡ଼ାକ ୟୁଜ୍-ଆଣ୍ଡ୍-ଥ୍ରୋ ସାହିତ୍ୟ...!!

ନାଟ୍ୟକାର — କଣ କହିଲୁ? ୟୁଜ୍-ଆଣ୍ଡ-ଥ୍ରୋ? ଆଉ ତୁ' ଏଡ଼େ କାଜୁଆ ନାଟ୍ୟକାରଟା? ରବୀନ୍ଦ୍ର ମଣ୍ଡପରେ ନାଟକ କରୁଛୁ।

ଅରବିନ୍ଦ — ଭଂଜ କଳା ମଣ୍ଡପରେ ମଧ କରିଛି।

ନାଟ୍ୟକାର — ଗୋଟେ ରାତି ପାଇଁ। ତା'ପରେ ଖବର କାଗଜରେ ଗୋଟେ ଫଟୋ ଆଉ ଛୋଟ ଖବର ବାହାରିବ। ତା'ପରେ ସମସ୍ତେ ଭୁଲିଯିବେ। ଏଇଟା ନାଟକ ଆଉ ତୁ' ଗୋଟେ ନାଟ୍ୟକାର? କାଇଁ ଗୋଟେ ଷ୍ଟୋରୀର ୱାନ୍-ଲାଇନ୍ କରି ଦେଖେଇଲୁ!

ଅରବିନ୍ଦ — ଅଧ ଘଣ୍ଟେ ଟାଇମ୍ ଦିଅ — ସାଂଗେ ସାଂଗେ ବନଉଛି। (ଚାଲିଗଲା)

ନାଟ୍ୟକାର — ଫୁଟାଣି! ଭୁବନେଶ୍ୱର ଫୁଟାଣି! କହିଲା ଅଧଘଣ୍ଟାରେ ୱାନଲାଇନ୍ ବନେଇବ! ଦେଖିବା କେମିତିଆ ଷ୍ଟୋରୀ...!! ହୁଁଃ। ହ୍ୱିସ୍କି...!! ମ୍ୟାନେଜର! ହ୍ୱିସ୍କି... (ମ୍ୟାନେଜର ଆସିଲା ନାହିଁ) ହୁଁଃ! (ଇତସ୍ତତଃ ହେଇ ଏପଟ ସେପଟ ହେଲା) ହ୍ୱିସ୍କି! ମୋର ହ୍ୱିସ୍କି ବୋତଲଟା କାଇଁ?

(ପ୍ରବେଶ କଲେ ଚୈତନ୍ୟ ବେହେରା। ହାତରେ ତାଂକର ଗୋଟେ କ୍ୱାଟ୍ ବୋତଲ)

ଚୈତନ୍ୟ — ଏଇ ସାର୍! ହ୍ୱିସ୍କି! ଜୟକଳା!

ନାଟ୍ୟକାର — ଖୋଲ! ବୋତଲଟାକୁ ଖୋଲିକି ଦିଅ! ନାଟ୍ୟକାରକୁ ଯଦି ମଦ ବୋତଲାଟାବି ଖୋଲିବାକୁ ପଡ଼ିବ, ତା ହେଲେ ତାର ମୁଡ୍... ମୁଡ୍‌ଟା ଶଳା ଫୁର୍‌ର୍ ହେଇ ଉଡ଼ି ପଳେଇବ। ଜାଣିଚ ନା ନାଇଁ? ଆଉ କେତେଦିନ

ମ୍ୟାନେଜର ହେଲେ ଏଗୁଡ଼ା ବୁଝିବ ? ହଇଓ ମ୍ୟାନେଜର ବାବୁ !

ଚୈତନ୍ୟ ଜୟକଳା ! ଏ ଚୈତନ୍ୟ ବେହେରା ସବୁ ଜାଣିଚି ସାରେ ! ଗୀତ ସାର୍ ଡ୍ୟାନ୍ସ ସାର୍, ଡାଇରେକ୍ଟର ସାର୍... ଆପଣ ସାର୍... ସମସ୍ତଙ୍କର ହୀଟ୍ ମାପିବା ପାଇଁ ମୋ' ପାଖରେ ଥର୍ମୋମିଟର୍ ଅଛି ସାର୍ !

(ନାଟ୍ୟକାର ବୋତଲରୁ ସିଧା ମଦ ଢାଳିଲେ ପାଟିରେ – ପାଣି ପିଇଲା ପରି) ଜୟକଳା ! ଆପଣଂକର ମୁଡ୍ ଆସିଗଲା ସାର୍ ! ଲେଖନ୍ତୁ... ଝକାସ୍ ଷ୍ଟୋରୀ ଲେଖିବେ ସାର୍ ! ଷ୍ଟୋରୀରେ ଖାଲି ଆକ୍ସିଡେଣ୍ଟ ହଉଥିବ... ବିପର୍ଯ୍ୟୟ... ଆକସ୍ମିକ ବିପର୍ଯ୍ୟୟ ଘଟାନ୍ତୁ ସାର୍ ! ମୁଁ ଚାଲିଲି । (ଚାଲିଗଲେ ଚୈତନ୍ୟ, ନାଟ୍ୟକାରଙ୍କୁ ନିଶା ହେଇଗଲା । ସେ ଯାଇ ଚୌକୀରେ ବସିଲେ । ବାର୍‌ଲାଇଟ୍‌ରେ ତିଆରି ଝରକାଟା ଆଲୋକିତ ହେଲା)

ନାଟ୍ୟକାର (ମଦ ପିଆ ସ୍ୱରରେ) ନାଟ୍ୟକାରର କଲମ କଣ ସବୁବେଳେ ତାର ମୁଣ୍ଡର ନିୟଂତ୍ରଣରେ ଥାଏ ? ନା, କିଂତୁ ଦେଖିବ ଅନେକ ଆଇଡ଼ିଆ, ଅନେକ କାହାଣୀ, ଅନେକ ଘଟଣା... ଅନେକ ଅନେକ ଅନୁଭୂତି ତା ମୁଣ୍ଡ ଭିତରକୁ... ତା' ଦିହ ଭିତରକୁ କେମିତି, କୋଉ ଆକାଶରୁ ଖସି ଆସେ... ସେ ଜାଣି ପାରେ ନାହିଁ ।

(ଏଇ ସଂଳାପ କହିଲାବେଳେ ବାର ଲାଇଟ୍‌ର ଝରକାଟା ଲିଭିଯିବ ଓ ଭାଡ଼ି ଉପରେ ଥିବା ଓ ଦେବୀ ଭଳି ଦିଶୁଥିବା ମହିଳା ଜଣକ ଦୃଶ୍ୟ ହେବେ । ମଂଚର ସବୁ ଆଲୋକ ଲିଭିଯିବ ଓ ଦେବୀ ଭଳିଆ ଦିଶୁଥିବା ସେ ନାରୀ ଉପରେ କେନ୍ଦ୍ରିତ ହେବ । ଆଲୋକ ନାଟ୍ୟକାର ଉପରେ ପଡ଼ିବ ଓ ଲିଭିଯାଇ ସେ ନାରୀ ଉପରେ କେନ୍ଦ୍ରିତ ହେବ ।)

ନାରୀ ତତେ ମୁଁ ଚିହ୍ନିଚି ନାଟ୍ୟକାର! ତୁ ମଣିଷ ପଣିଆର ଏକ ଅଦ୍ଭୁତ ଅପଭ୍ରଂଶ! ତତେ ମୁଁ ଆଉ ଲେଖିବାକୁ ଅନୁମତି ଦେବି ନାହିଁ (ସଂଗୀତ) ତତେ ମୁଁ ଯାତ୍ରାପାର୍ଟି ପାଇଁ ଲେଖିବାକୁ ମନା କରିଥିଲି ନା? ତୁ' କଣ ପୁଣିଥରେ କଲମ ଧରିଲୁଣି?... ଜାଣିଚୁ ମୁଁ ତୋର କଣ କରିବି?

(ଗୋଟେ ଆଦିବାସୀ ଶିକାର ବାଜାର ଦ୍ରୁତ ଲୟରେ ଧୁମ୍‌ସା ବାଜିବ, ତା' ସାଂଗରେ ଟିକିରା। ନାରୀ ଉପରୁ ଆଲୁଅ କଟିଲା)

(ଆଖିବୁଜି ଆବୃତ୍ତି କଲେ)

ନାଟ୍ୟକାର ଆସ ମୋର ବଣନିଆଁ, ଜାଳିଦିଅ।

ଶୁଖିଥିବା ପତ୍ରସବୁ କଳ୍ପନାର ଉଗ୍ର ଆଲୁଅରେ।

(ଖୁବ୍ ଜୋର୍‌ରେ କଳାହାଣ୍ଡି ଆଦିବାସୀ ବାଜା ବାଜିଲା ଓ ଦ୍ରୁତ ହେଲା ଲୟ। ଅରବିଂଦ ପ୍ରବେଶ କଲା କାଳିସୀ ବେଶରେ। ମୁଣ୍ଡରେ ଚାରି ଛଅଟା ପକ୍ଷୀର ପର ଓ ଗୋଟେ ଗଛର ଡାଳ ପିନ୍ଧି ପକେଇ ଆଦିବାସୀ ପରି ଦିଶିବ, ଗୋଟେ କଳା କନାରେ ଘୋଡ଼େଇ ପକାଅ ତାର ପୋଷାକ) ମୁହଁରେ ତାର ଗୋଟେ ଭୟଂକର ବନ୍ୟ ପଶୁର ମୁଖା। ହାତରେ ଗୋଟେ ମୟୂର ଗୁଚ୍ଛ। ଦିହ ସାରା କାଇଁଚ ମାଳି ଓ ସାତ/ ଆଠଟା ଛୋଟ ସାପ ହାତରେ ଗୋଡ଼ରେ ବେକରେ ବଂଧା ହେଇଛଂତି।

ଅରବିଂଦ ନାଚୁଥିଲା କାଳିସୀ ପରି। ସେ ମଂଚରେ ପ୍ରବେଶ କରି ଯେତେବେଳେ ନାଟ୍ୟକାର ଚାରିପଟେ ବୁଲିଲା, ନାଟ୍ୟକାର ବିରକ୍ତ ହେଲା।

ନାଟ୍ୟକାର ଠିଆ ହୋଇ ପଡ଼ିଲେ ଉତ୍ତ୍ୟକ୍ତ ହୋଇ। ତାକୁ ଅଟକାଇବାକୁ ଚାହିଁଲେ। ପାରିଲେ ନାହିଁ।)

ନାଟ୍ୟକାର ଏ...ଏ...ଏ...!! ତୁ' କିଏ? (ବାଜା ଶବ୍ଦ କମିଗଲା)

ଅରବିନ୍ଦ ମୁଁ କାଳିସୀ! ମୁଁ ପରା ତମ ଭିତରୁ ବାହାରିଲି। ଚିହ୍ନି ପାରୁନା କ'ଣ?

ନାଟ୍ୟକାର ମୁଁ ତତେ ଚିହ୍ନିବାକୁ ଚାହେଁନା। ମୁଁ ଭଦ୍ର ଲୋକ! ସଂଭ୍ରାନ୍ତ!! ନାଟ୍ୟକାର। ଆଦିମ ଅଧିବାସୀ ନୁହେ। ତୋ' ଭଳିଆ!

ଅରବିନ୍ଦ ତୋ" ଭିତରେ ଗୋଟେ ଆଦିମ ଅରଣ୍ୟ ଅଛି। ଲୁଚୋଉଚୁ କାହିଁକି? ରବୀନ୍ଦ୍ର ମଣ୍ଡପରେ ଡ୍ରାମା ହଉଛି ବୋଲି ସମାଜକୁ ଗୋଟେ ଜଂଗଲ ଦେଖେଇ ପୁରସ୍କାର ଗୁଡ଼ା ମାରିନଉଚୁ!

ନାଟ୍ୟକାର (କୌଣସି ଉତ୍ତର ଦେଇ ନପାରି ଇତସ୍ତତଃ ହେଲା) ନା...ନା...ନା...

କାଳିସୀ ଏଇ ଲୋକଟା ଶଳା ମୁଖା ପିନ୍ଧିଚି! ଆପଣମାନେ କଣ ଜାଣି ନାହାନ୍ତି? ଏଇନା – ମୁଁ ପରା ୟା ଭିତରୁ ବାହାରିଲି!! ଇଏ କ'ଣ କହୁଚି ମତେ ଚିହ୍ନିନି! ଆଶ୍ଚର୍ଯ୍ୟ!!

ନାଟ୍ୟକାର ଥିଲୁ ତ ଥିଲୁ। ଏଇଠି ଆସି ଷ୍ଟେଜ୍ ଉପରେ ଡେଉଁଚୁ କାହିଁକି? ଜାଣିଚୁ? ଏ ଷ୍ଟେଜ୍‌ଟା ମୋ' ମୁଣ୍ଡ ଭିତରେ ଅଛି।

କାଳିସୀ ଆବେ ନାଟକ ଲେଖୁଚୁ, ମୁଣ୍ଡ ଭିତରେ କାଳିସୀ ନ ଲାଗିଲେ ଲେଖିବୁ କେମିତି? ଏଇଟା କଣ କବିତା ଯେ ଶବ୍ଦ ଗୁଡ଼େ ଯୋଡ଼ିଦେଲେ ଦର୍ଶନ ବାହାରିବ? ନା ଗୋଟେ ଖବରକାଗଜ ସମ୍ବାଦ ଉପରେ ତିଆରି ହେଇଥିବା ଗପ ବୋଲି ଭାବିଲ?

ନାଟ୍ୟକାର ଗେଟ୍ ଆଉଟ୍! ଯୋଉ ଜଂଗଲରେ ଥିଲୁ ସେଇଠିକି ଚାଲିଯା' – ଡୋଣ୍ଟ ସୋ' ୟୋର ୱାଇଲଡ଼ ଫେସ୍!!

(କାଳିସୀ ପଛେ ପଛେ ନାଟ୍ୟକାର ଗଲା। ସିଏ ଅଦୃଶ୍ୟ ହେବା ପର୍ଯ୍ୟନ୍ତ। ତା'ପରେ ଫେରି ଆସି ଦର୍ଶକ ସମାଜକୁ କହିଲା)

ନାଟ୍ୟକାର ଆମେ ସବୁ ଆଜ୍ଞା... ଏମିତି ଗୋଟେ ସମୟରେ ବଂଚିଛୁ ଯୋଉଠି ଗପ ବୋଲି ଆଉ କିଛି ନାଇଁ। ଗପର ଯାଗା ମାଡ଼ି ବସିଚି ଗସିପ୍! ସେଇଟାବି କାଳ୍ପନିକ...! କଥାଟା ଏମିତି ହେଇଥାଇ ପାରେ ବୋଲି ଗୋଟେ ଅନୁମାନ। ସବୁ ଅନୁମାନରେ ଚାଲିଚି... ହେଲେ ମୋ' ନାଟକଟା କଣ ହବ? ସେ ଶଳା – ଯାତ୍ରାପାର୍ଟି ମ୍ୟାନେଜରଟା କୁଆଡ଼େ ଗଲା? ଶଳା ସେଇଟା ମ୍ୟାନେଜର ନା ମାଲିକ୍? (ବ୍ୟସ୍ତ ହେଇ) ଚୈତନ୍ୟ... ଚୈତନ୍ୟ!! Consciousness? ଶଳାଟା କୁଆଡ଼େ ହଜି ଯାଇଚି...!! ହେ... ୟୁ... ଶୁଷ୍କ ପ୍ରସ୍ରବଣ? ତମେ ଗଲ କୁଆଡ଼େ...?

ଚୈତନ୍ୟ (ଦୌଡ଼ି ଦୌଡ଼ି ଆସିଲା। ଆଣ୍ଠୁମାଡ଼ି ବସିଗଲା। ହାତ ଦିଇଟାକୁ "ସରେଣ୍ଡର" ଅଭିନୟ କରି ଟେକିଦେଲା। ଡାହାଣ ହାତରେ ଗୋଟେ କ୍ୱାଟ୍ ହ୍ୱାଇଟ୍ ରମ୍ ବୋତଲ ଧରିଛି) ଏଇଠି ଅଛି ସାର୍! ଏଇଠି ଆପଣଂକ ସେବାରେ।

ନାଟ୍ୟକାର ଉଠ ଚୈତନ୍ୟ! ଠିଆ ହୁଅ! ଚୈତନ୍ୟମାନେ ଏମିତି ଆଣ୍ଠେଇ ପଡ଼ିଲେ କଳ୍ପନାର ଦୁର୍ଗ ଭୁଷୁଡ଼ି ପଡ଼ିବ! ହାତରେ ସେଇଟା କଣ?

ଚୈତନ୍ୟ ହ୍ୱାଇଟ୍ ରମ୍! ସ୍ପେଶାଲ ଜିନିଷ ସାର୍! ସାଂଗଟା ମିଲିଟାରୀରେ ଅଛି। ଆଣିଥିଲା ମୋ' ପାଇଁ। ଆପଣ ନିଅନ୍ତୁ ସାର୍ (ଦେଲା ମଦ ବୋତଲଟା)

ନାଟ୍ୟକାର ଭଲ! ତମେ ଯେତେବେଳେ ଆସୁଚ ଏଇଥିରୁ ଗୋଟେ କଣ ନେଇକି ଆସୁଛ!

ଚୈତନ୍ୟ ପିଡ଼ିଆ ସାର୍! ଫର୍ଟିଲାଇଜର୍ ଫର୍ ଦ' ବ୍ରେନ୍!

ନାଟ୍ୟକାର କଣ ଭାବିଲ ମତେ? ରମ୍ ନ ପିଇଲେ ମୁଁ ନାଟକ ଲେଖି ପାରିବି ନାଇଁ?

ଚୈତନ୍ୟ ଯାତ୍ରାପାର୍ଟିରେ ଅରଗାନିକ୍ ନାଟକ ହଉନି ସାର୍! ଫର୍ଟିଲାଇଜର ଦରକାର! ଝକାସ୍ କାହାଣୀ!! ପ୍ରତି ପାଞ୍ଚ ମିନିଟରେ ଥରେ ଥରେ ଆକସ୍ମିକ ଦୁର୍ଘଟଣା ଘଟୁଥିବ... ବିପର୍ଯ୍ୟୟ ଘଟୁଥିବ... ଗୋଟେ ବୋମା ଫୁଟୁଥିବ। ପ୍ରତି ଦୁଇଟା ସିନ୍ ପରେ ଗୋଟେ ଫାଇଟିଙ୍ଗ୍ ନିଶ୍ଚୟ ହବାକୁ ପଡ଼ିବ!

ନାଟ୍ୟକାର ଟୋଟାଲ୍ କେତେଟା ଫାଇଟିଙ୍ଗ୍? (ମଦ ପିଇଲେ)

ଚୈତନ୍ୟ ପାଞ୍ଚଟା ସାର୍! ଗୋଟାକୁ ପାଞ୍ଚ ମିନିଟ ଗଲେ ଟୋଟାଲ୍ ପଚିଶି ମିନିଟ୍!

ନାଟ୍ୟକାର ଆଉ ଗୀତ କେତେଟା? (ମଦ ପିଇଲେ)

ଚୈତନ୍ୟ ପାଞ୍ଚଟା, ସବୁ ଗୀତରେ ନାଚ ହବ ସାର। ଗୋଟେ ଗୀତକୁ ସାତମିନିଟ – ସାତ୍ ପଞ୍ଚା ପଞ୍ଚ ତିରିଶ୍ ମିନିଟ୍ ସାର୍! ଏଇଠି ଗଲା ପଚାଶ ମିନିଟ! ଆଉ ତିନି ଘଣ୍ଟାର ଡାଇଲଗ୍ ସାର୍!! ଅଢ଼େଇ ହଜାର ପଏଣ୍ଟ୍ ହେଇଗଲେ କାମ ଫତେ! କୋଉ ଯାଏ ଗଲା ସାର୍?

ନାଟ୍ୟକାର ତମେ ଅଂକ ଜାଣିଚ ଯାତ୍ରା ପାର୍ଟି? ଗୋଟେ କୁଣ୍ଡ ଥିଲା, ଉପରୁ ଯେତେ ପାଣି ପ୍ଲାଷ୍ଟିକ ନଳୀରେ ପଶୁଥିଲା ତା'ଠୁ ବେଶୀ ତଳର କଣା ବାଟେ କୁଣ୍ଡରୁ ବାହାରି ଚାଲି ଯାଉଥିଲା।

ଚୈତନ୍ୟ ବୁଝି ପାରିଲିନି ସାର୍! ମଝିରେ ମଝିରେ ଆପଣ ଏମିତି ସବୁ କ୍ୟାରେକ୍ଟର ଆଣୁଛଂତି ଯେ ଆମ ଡିରେକ୍ଟର ସିକ୍ୱେନ୍ସ ପାଉନାହାନ୍ତି।

ନାଟ୍ୟକାର ସିକ୍ୱେନ୍ସ? କ୍ୟାରେକ୍ଟେର? ମୁଁ ସେଗୁଡ଼ା ବୁଝେନା!

ଚୈତନ୍ୟ କିଛି ବୁଝିବା ଦରକାର ନାହିଁ ସାର୍! ଆପଣ ଖାଲି ଆକ୍ସିଡେଣ୍ଟ୍ ତିଆରି କରନ୍ତୁ... ଅଚାନକ ବିପର୍ଯ୍ୟୟ... ଦି ଚାରିଟା ମଡ଼ର... ଆଉ ଯେତେ ରେପ୍ ସିନ୍ ଦେବେ ସେତେ ଟିକେଟ ବିକ୍ରୀ

ହବ ସାର୍! ଆପଣଂକ କୁଣ୍ଡରେ ପାଣି ପଶୁଚି କି ନାଇଁ?

(ଅଧରାତିର ଆଲୋକ ସଂପାତ। ଦୁଇ ଚାରିଟା କୁକୁର ଭୁକିବାର ଶବ୍ଦ। ନାଟ୍ୟକାର ଗଲେ କୁକୁର ଗଣ୍ଡଗୋଳ ଦେଖିବାକୁ। କିଛି ସମୟ ଠିଆ ହୋଇ ଚାଲି ଆସିଲେ।)

ଚୈତନ୍ୟ — ସାର୍ ଆଉଟ୍ ହେଇଗଲେ ନା କ'ଣ? ସାର୍!

ନାଟ୍ୟକାର — ଏଁ!

ଚୈତନ୍ୟ — ଆପଣଙ୍କ ମୁଣ୍ଡରେ... କ୍ଷମା କରିବେ... କୁଣ୍ଡରେ ପାଣି ପଶୁଚି ନା ନାଇଁ?

ନାଟ୍ୟକାର — ଯେତେ ଗ୍ୟାଲନ୍ ପାଣି ପଶୁଚି... (ବୋତଲରୁ ମଦ ପିଇଲେ) ତା'ଠାରୁ ବେଶୀ ପାଣି ବୋହି ଯାଉଛି...

ଚୈତନ୍ୟ — ବୋହି ଯାଉଚି? ତାହେଲେ ତ ଅସୁବିଧା ସାର୍! କୁଣ୍ଡ ଆଉ ମୁଣ୍ଡ... ଦି'ଟା ଯାକ ଖାଲି ହେଇଯିବ...

(ପ୍ରବେଶ କଲା ଅରବିନ୍ଦ। ଦି'ହାତରେ ଗୋଟେ ଛୋଟ ଫ୍ଲାଟ୍ ଟି.ଭି. ଧରିଚି ଏବଂ କହି କହି ପ୍ରବେଶ କରୁଛି...)

ଅରବିନ୍ଦ — ନୋ' ସାର! ନେଭର୍! ମୁଣ୍ଡ ଆଉ କୁଣ୍ଡ - ଖାଲି ହେଇଯାଇପାରେ, କିଂତୁ ପୁଣି ଭର୍ତ୍ତି ହବ। ହବାକୁ ବାଧ।

(ଭିତରକୁ ପଶି ଟି.ଭି.ଟା ରଖିଲା। ନାଟ୍ୟକାର ତା' ପାଖକୁ ଗଲା ଓ ଚୈତନ୍ୟଙ୍କୁ ପରିଚୟ କରେଇ ଦେଇ କହିଲା)

ନାଟ୍ୟକାର — ମୋ' ଭାଇ! ସାନଭାଇ! ଅରବିନ୍ଦ!

ଚୈତନ୍ୟ — ସାର୍, ନମସ୍କାର!

ନାଟ୍ୟକାର — ଇଏ ହିନ୍ଦୀ ସିରିଏଲ୍‌ରେ ଡିରେକ୍‌ସନ ଦିଅନ୍ତି। ଏବେ ଆମ ଘରେ ଅଛଂତି। ମୋ' ସାଂଗରେ ଜିଦ୍ କରୁଛଂତି - ସିଏ ବି ନାଟକ ଲେଖିବେ।

ଚୈତନ୍ୟ ଲେଖନ୍ତୁ ସାର୍! ଆପଣ ଦି'ଜଣଯାକ ମିଶିକି ଲେଖନ୍ତୁ। କିଏ ଲେଖିଲେ ମୋର କଣ ଯାଏ। ସାର୍ ମୁଁ ଚୈତନ୍ୟ ବେହେରା। 'ବିନ୍ଦାସ୍ ଗଣନାଟ୍ୟ'ର ମ୍ୟାନେଜର! ସୁବିଧା ହେଲେ ଆମ ଆଖଡ଼ା ଆଡ଼େ ପାଦ ପଡ଼ୁ। ଆମେ ଧନ୍ୟ ହବୁ ସାର୍! ନାଟକଟା ନେଇକି ଆସିବେ!

ଅରବିଂଦ ଧନ୍ୟବାଦ! କିଂତୁ ମୁଁ... ମୁଁ ଯାତ୍ରାପାର୍ଟି ବିଷୟରେ କିଛି ଜାଣିନି। ସେଇଠି ଯାଇ କଣ କରିବି? ଭାଇ ଯାଉଛଂତି ପରା!

ନାଟ୍ୟକାର ଚୈତନ୍ୟ! ତମେ ଅରବିନ୍ଦ ସାଂଗରେ ଗପୁଥାଅ - ମୁଁ ଭିତରୁ ଟିକିଏ ଫ୍ରେସ୍ ହେଇକି ଆସୁଚି...

(ନାଟ୍ୟକାର ଭିତରକୁ ଚାଲିଗଲେ)

ଚୈତନ୍ୟ ସାର୍! ବମ୍ବେରେ ଆପଣ ସିରିଏଲ୍ ପାଇଁ କେତେ ପାଆନ୍ତି?

ଅରବିନ୍ଦ ମୁଁ ଏପିସୋଡ଼୍ ଡାଇରେକ୍ଟର ଭାବରେ ମଝିରେ ମଝିରେ କାମ କରେ।

ଚୈତନ୍ୟ ପର୍ ଏପିସୋଡ଼୍...?

ଅରବିନ୍ଦ ପାଞ୍ଚ! ପାଞ୍ଚଲକ୍ଷ।

ଚୈତନ୍ୟ ମତେ ଟିକିଏ ବମ୍ବେ ନେଇ ଯିବେ?

ଅରବିନ୍ଦ ବମ୍ବେ ଯିବେ? କାହିଁକି? ସେଠି ଆପଣଂକ କାମ କ'ଣ?

ଚୈତନ୍ୟ ସେଇଠି ନାଟକ ଭଲ ହୁଏ ବୋଲି ଆମେ ଶୁଣିଚୁ ସାର୍! ଏଇ ମଂଚ ଆଲୋକ କିଛି କିଣିବା ଆଉ ଗୀତ ଫିତ ରେକର୍ଡିଂ କରି ଆଣିବା।

ଅରବିଂଦ ବହୁତ ପଇସା ଖର୍ଚ୍ଚ ହବ। ଆପଣ କଣ ଦେଇ ପାରିବେ?

ଚୈତନ୍ୟ ଦେବି ସାର୍! ଟଂକା ଲଢ଼େଇବାକୁ ମୁଁ ରାଜି! କିଂତୁ ଆମର

"ବିଂଦାସ ଅପେରା" ଯେମିତି ବଂଗ, ବିହାର ଓଡ଼ିଶାର ଟାଇଗର ପାର୍ଟି ହେଇ ବାହାରିବ। ନଂବର ୱାନ୍!!

ଅରବିନ୍ଦ (ଚିଂତା କଲେ) ନଂବର ୱାନ୍ ପାର୍ଟି କରିବାକୁ ହେଲେ ମୁଁ ଭାବୁଚି... ଗୋଟେ ବଢ଼ିଆ ଷ୍ଟୋରୀ ଦରକାର! ଭାଇଙ୍କ ଷ୍ଟୋରୀ ଜମୁଚି ?

ଚୈତନ୍ୟ ଜମୁଚି ମାନେ ? ଉଡୁଚି ସାର୍! ଉଦଳାରେ ଲାଗ୍ ଲାଗ୍ ଡବଲ ସୋ' ଚାଲିଲା ବାର ଦିନ! ଶହେ ଟଂକାର ଟିକଟ ବ୍ଲାକ୍ ହେଲା ପାଁଶରେ!

ଅରବିଂଦ ସବୁ ଚାଲିଲା ଯେ... ଭାଇଙ୍କର ଏକ୍ସପୋଜର୍ ନାଇଁ।

ଚୈତନ୍ୟ ସେଇଟା କଣ ଆଗଁ୍ୟା ସାର୍ ?

ଅରବିଂଦ ବମ୍ବେରେ ଷ୍ଟୋରୀ ଉପରେ ଆମର ରିସର୍ଚ୍ଚ ଚାଲେ। ତେଲୁଗୁ, ତାମିଲ, ବଂଗଳା ଆଉ ମରାଠୀ... ଏସବୁ ସିନେମାରୁ ସିକ୍ୱେନ୍ସ କପି ହେଇ କକ୍‌ଟେଲ୍ କରା ହଉଚି... ତା'ପରେ ଇଂଗଲିଶ୍ ଫିଲ୍ମରୁ ମାଲ୍ ଆସୁଚି!!

ଚୈତନ୍ୟ ଝକାସ୍!! କକ୍‌ଟେଲ୍ ? ଆମ ପାଇଁ ଗୋଟେ କକ୍‌ଟେଲ୍ କରି ଦିଅନ୍ତୁ ସାର୍!

ଅରବିନ୍ଦ ଦେଖନ୍ତୁ ଆମେ ବଂବେ ବାଲା... ମାଗଣାରେ ଏଠି କିଛି କାମ ହୁଏନି।

ଚୈତନ୍ୟ (ଲକ୍ଷେ ଟଂକାର ଗୋଟାଏ ନୋଟ ବିଡ଼ା ବାହାର କରି) ଆମେ ବି ମାଗଣାରେ କିଛି କରୁନୁ ସାର୍... ନିଅନ୍ତୁ ଏଇ ରଖନ୍ତୁ ଲକ୍ଷେ! ଏମିତି ଝକାସ୍ ଷ୍ଟୋରୀ କରିବେ... ବଂଗ-ବିହାର-ଓଡ଼ିଶାର ଶୂନ୍ୟ ମଂଚରେ ବୋବାଲ୍ ସୃଷ୍ଟି କରିବ!

ଅରବିଂଦ ଚାଲନ୍ତୁ ଗୋଟେ ଦି'ଟା ୱାନ୍-ଲାଇନ୍ ଷ୍ଟୋରୀ ଶୁଣୋଉଚି ଆପଣଂକୁ!

| | |
|---|---|
| ଚୈତନ୍ୟ | ଏଇଠି ନୁହେ ସାର୍... ମୋ' ଫେୟାର୍‌ରେ ବସିବା ଗୋଟେ କଟେଜ୍ ନେଇ... ଆସନ୍ତୁ ସାର୍... |
| ଅରବିଂଦ | ଗୋଟେ ମିନିଟ୍ ସାର୍! ମୁଁ ଗୋଟେ ଟିଭି ନେଇକି ଆସିଥିଲି ଭାଇଙ୍କ ପାଇଁ। ଅଛିନା ନା ନାଇଁ ଦେଖି ଆସୁଚି। |
| | (ଟି.ଭି. ରଖାଯାଇଥିବା ଯାଗାକୁ ଗଲେ ଓ ପରୀକ୍ଷା କଲେ) |
| | ଭାଇ...!! ଏଇଠି ଟିଭିଟା ରହିଲା। ନାଟକର ଷ୍ଟୋରୀ ଜାମ୍ ଧରିଲେ ଟିଭି ଦେଖି ଲେଖିବ। ମୁଁ ଆସୁଚି ଟିକିଏ ଚୈତନ୍ୟ ବାବୁଙ୍କ ସାଂଗରେ। |
| ଚୈତନ୍ୟ | ସାର୍ ଷ୍ଟୋରୀ ଯେମିତି ଫ୍ଳାସ୍ ହବ - ଦେଖିବେ ସାର୍! ଜମାରୁ ମନରୁ ଲେଖିବେ ନାଇଁ! ଟିଭି ଦେଖିକି ଲେଖିବେ। |
| | (ହଠାତ୍ ପ୍ରବେଶ କଲେ ନାଟ୍ୟକାର। ସେ ଗୋଟେ ଲୁଙ୍ଗି ପିନ୍ଧିଛଂତି ଓ ସାର୍ଟଟା ପିନ୍ଧି ବୋତାମ ଲଗାଉ ଲଗାଉ ପ୍ରବେଶ କଲେ) |
| ନାଟ୍ୟକାର | କଣ କହିଲ ଚୈତନ୍ୟ? ମୁଁ ଟିଭିରୁ କପି କରି ଲେଖିବି? |
| ଚୈତନ୍ୟ | କିଛି ଅସୁବିଧା ନାଇଁ ସାର! ସିରିଏଲ୍ ଷ୍ଟୋରୀ ଯଦି ମନକୁ ପାଉନି ଫିଲ୍ମରୁ କପି କରାନ୍ତୁ! ତାମିଲ ଫିଲ୍ମ! |
| ନାଟ୍ୟକାର | ତମେ ଭଲଭାବେ ଜାଣ ଚୈତନ୍ୟ... ମୁଁ ମୋର ନିଜର ଷ୍ଟୋରୀ କରେ - ନିଜର କ୍ୟାରେକ୍ଟର... ନିଜର ସିକ୍ୱେନ୍ସ ତିଆରି କରେ। ଓରିଜିନାଲ୍!! |
| ଅରବିଂଦ | ଭାଇ! ଓରିଜିନାଲ୍ ଆମର କଣ ଦରକାର? ସେଗୁଡ଼ା କଣ ହବ? |
| ଚୈତନ୍ୟ | ସାର୍ ଫ୍ଳାସ୍ କଥା କହୁଛଂତି ଆଗଁ୍ୟା! ଓରିଜିନାଲ୍ କୋଉଟା? ପାଞ୍ଚଟା ଡୁପ୍ଲିକେଟ୍ ଖଣ୍ଡଷ୍ଟୋରୀକୁ ମିଶେଇଲେ ଗୋଟେ ଓରିଜିନାଲ୍ ପରା ହେଇ ଯାଉଚି। |

| | |
|---|---|
| ନାଟ୍ୟକାର | ତା'ମାନେ ଗୋଟେ ଫିଲ୍ମରୁ ମୁଁ କପି କରିବି ? |
| ଅରବିଂଦ | କପି କରିବାକୁ ବାଧ ଭାଇ ! ଆଜି କାଲି ସମସ୍ତେ ସେୟା କରୁଛଂତି । |
| ନାଟ୍ୟକାର | ଚୁପ୍ କର ! ସମସ୍ତେ ସେୟା କରୁଛଂତି ! ! |
| ଚୈତନ୍ୟ | ସବୁ ରାଇଟର୍ ସେୟା କଲେଣି ସାର୍ ! |
| ନାଟ୍ୟକାର | ମୁଁ ରିଏଲ୍ ଲାଇଫ୍ ଷ୍ଟୋରୀରେ ବିଶ୍ୱାସ କରେ ଅରବିନ୍ଦ... |
| ଚୈତନ୍ୟ | ସେଇଟା ପୁଣି କଣ ସାର୍ ? |
| ନାଟ୍ୟକାର | ସେ ଦିନ ଗଂଜାମର ଜୋକବଂଧ ଗାଁରେ ବନିତା ବୋଲି ସେଇ ବାରବର୍ଷର କୁନି ଝିଅଟା ପାଠ ପଢ଼ିବାକୁ ଚାହୁଁଥିଲା, ଆଉ ତାର ଦିନମଜୁରିଆ ବାପା... ବିଜୟ ନାୟକ ପକ୍ଷାଘାତ ରୋଗରେ ପଡ଼ିଯିବାରୁ ତା' ପାଇଁ ଖାତା କି କଲମ କିଣି ପାରିଲା ନାଇଁ... ଯୋଉ ବାପା ଛୁଆ ପିଲାଙ୍କୁ ଦି'ମୁଠା ପଖାଳ ଖାଇବାକୁ ଦେଇ ପାରୁନଥିଲା, ସିଏ ଝିଅର ପାଠପଢ଼ା ପାଇଁ ଖାତା ଆଉ କଲମ କେମିତି କିଣିବ... |
| ଅରବିନ୍ଦ | ଏଗୁଡ଼ା ସାମ୍ବାଦିକମାନେ ଖବର କାଗଜ ପାଇଁ ଲେଖନ୍ତି ଭାଇ ! ଯାତ୍ରା ପାଇଁ ନ'ଟା ରସ ଦରକାର ! ଖଚାଖଚ୍ ଘଟଣା ଘଟୁଥିବା ଦରକାର... କଥା କହୁ କହୁ ଡିସୁମ୍ ! |
| ନାଟ୍ୟକାର | ଏ ! ତୁ' ମତେ ଯାତ୍ରା ଷ୍ଟୋରୀ ପଢ଼େଇବୁ ? ଏଁ ? |
| | (ତାକୁ ଧମକେଇଲେ ଓ ଗୋଟେ ଛୋଟ ଧକ୍କା ଦେଲେ) |
| ଚୈତନ୍ୟ | (ଅରବିନ୍ଦକୁ) ଆସନ୍ତୁ ସାର୍ ଆମେ ଯିବା ! |
| ନାଟ୍ୟକାର | ଏଇଟାକୁ ନେଇ କୁଆଡ଼େ ଯାଉଛ ଚୈତନ୍ୟ ? |
| ଚୈତନ୍ୟ | କୁଆଡ଼େ ନୁହେ ସାର... ଏଇ ମେ' ଫେୟାର୍‌ରେ ଲଂଚ କରିକି ଆସିବୁ ! |

ଅରବିନ୍ଦ ଚୈତନ୍ୟ ବାବୁଙ୍କ 'ବିନ୍ଦାସ୍ ଗଣନାଟ୍ୟ' ପାଇଁ ଗୋଟେ ଲଭ୍ ଷ୍ଟୋରୀ ଶୁଣେଇବି...

ନାଟ୍ୟକାର ଇଏ ? ଇଏ ଲଭ୍‌ଷ୍ଟୋରୀ ଶୁଣେଇବ ?

ଅରବିନ୍ଦ ଜମା ଓରିଜିନାଲ୍ ଷ୍ଟୋରୀ ଶୁଣେଇବିନି... ହିରୋ ହିରୋଇନ୍‌କୁ ଖୋଜୁଚି ଆଉ ହିରୋଇନ୍ ହିରୋକୁ ଖୋଜୁଚି... ଏକ୍ ମୁଲାକାତ୍ ଜରୁରୀ ହୈ ସନମ୍...

ନାଟ୍ୟକାର ହିନ୍ଦୀ ଷ୍ଟୋରୀ ?

ଚୈତନ୍ୟ ଟାମିଲ୍ ଷ୍ଟୋରୀ ସାର୍...

ଅରବିନ୍ଦ ଟାମିଲ୍‌ରୁ ହିନ୍ଦୀ ହେଇଚି... ହିନ୍ଦୀରୁ ଓଡ଼ିଆ... ଆସୁଚି ଭାଇ ! ଟେକ୍ କେୟାର୍ ! ଜମାରୁ ଟେନ୍‌ସନ୍ ନବନି... ସେଇଠି ଟିଭି ଅଛି... ସୋନୀ ଚାନାଲ୍ ଦେଖିବ... ପ୍ରକାର ପ୍ରକାର ହରର୍ ଷ୍ଟୋରୀ ମିଳିବ – ସିଧା ଉଠେଇ ଦବ ! ଜମ୍‌ମାରୁ ଓରିଜିନାଲ୍ ଲେଖିବ ନାଇଁ ! ! ଆସନ୍ତୁ ଚୈତନ୍ୟ ବାବୁ – ! ! ବାଏ ! !

(ଚାଲିଗଲେ ଦୁହେଁ । ନାଟ୍ୟକାର ରାଗିଗଲେ । ଈର୍ଷା ହେଲା ତାଂକର... ସେମିତି ଲୁଂଗୀ ପିନ୍ଧା ଅବସ୍ଥାରେ ଦପ୍ ଦପ୍ ପାହୁଣ୍ଡ ପକେଇ ଚାଲିଗଲେ ବାମ ପଟେ ଭିତରକୁ । ଡାହାଣପଟୁ ପ୍ରବେଶ କଲେ ସୁହାସିନୀ । ହାତରେ ସରବତ ଗ୍ଲାସ ୨/୪ଟା)

ସୁହାସିନୀ ହଇଏ ! କୁଆଡ଼େ ଗଲ ?... ପୁଣି ଅଦୃଶ୍ୟ ?

(ଲୋକଙ୍କୁ) ଇଏ ନାଟ୍ୟକାର ଗୁଡ଼ା ମଝିରେ ମଝିରେ ହଠାତ୍ ଏମିତି ଉଡ଼ି ଯାଆନ୍ତି କୁଆଡ଼େ ? (ବ୍ୟସ୍ତ ହୋଇ ପଦ ଚାରଣା କରୁ କରୁ...) ମୁଁ ତ ଆଗଁୟା ମାଇପି ଲୋକ... ମାଟି, ପାଣି ଆଉ ନିଆଁକୁ ନେଇ ଜୀବନ... ମୁଁ କାହୁଁ ବୁଝିବି ଏଇ ଅଦୃଶ୍ୟ ହେଇ ଯିବାର ରହସ୍ୟ ?

(ଆବହ ସଂଗୀତ ରୂପେ ଶୁଭିଲା ଟିକିରାର ଗୋଟେ ରୋଲ୍ । ତା'ପରେ ଠାକୁରାଣୀ ମାଜଣାର ବାଜା । ରହସ୍ୟଟା ହଠାତ୍ କେମିତି ଗୋଟେ ବାଜା ହେଇଗଲା ଜାଣିବାକୁ ଚାହିଁଲେ ସୁହାସିନୀ । ସେ ଅଟକି ଗଲେ ଓ କାନେଇଲେ । ବାଜାର ଶବ୍ଦ କ୍ରମେ କ୍ରମେ ଉଚ୍ଚରୁ ଉଚ୍ଚତର ହେଲା । ଆଲୁଅ ଡିମରରେ କମିଲା ଓ ଏକା ସାଂଗରେ ଭାଡ଼ି ଉପରେ ବସିଥିବା ସ୍ତ୍ରୀ ଲୋକଟା ଉପରେ ନାଲି ଆଲୁଅ ସଂପାତ କରାଗଲା । ଏଇ ଅଂଧାର ଭିତରେ ସୁହାସିନୀ ଚାଲିଗଲେ । ପୁଣି ଡିମରରେ ନୀଳ ଆଲୋକ ବିଚ୍ଛୁରିତ ହେଲା ରାତିର ସଂକେତ ବହନ କରି । ସେଇ ନୀଳ ଆଲୁଅରେ କାଳିସୀ ଭଳି ନାଚୁଥିଲା ଗୋଟେ ଓଝା । ଗୋଟେ ଦେଶୀ ତାଂତ୍ରିକ ।)

୦ ୦ ୦



## ଦୃଶ୍ୟ – ୪

(ମଂଚର ନୀଳ ଆଲୋକରେ ଅସ୍ପଷ୍ଟ ଦେଖାଯାଉଥିବା ଓଝା ଚରିତ୍ରଟି ସ୍ପଷ୍ଟ ଆଲୋକରେ ଉଜ୍ଜ୍ୱଳ ଦିଶିଲା । ମଂଚରେ ଧଳା ଆଲୋକ ଆସିଲାପରେ ଢୋଲକରେ ଦ୍ରୁତ କହରବା ତାଳରେ "ଓଁ ଐଂ ହ୍ରୀଂ କ୍ଲୀଂ ଚାମୁଣ୍ଡାୟ ବିଜେ" ଗୀତଟିଏ ସମବେତ କଂଠରେ ଅଷ୍ଟପ୍ରହରୀ କୀର୍ତ୍ତନ ଭଳି ଶୁଭିବ ଓ ପାଖାପାଖି ଦେଢ଼ମିନିଟ ପରେ ବଂଦ ହେବ । ତାରି ଭିତରେ ପ୍ରବେଶ କରିଛଂତି ଚୈତନ୍ୟ ବେହେରା ।)

ଚୈତନ୍ୟ — ମା' ! ମା' ! ରକ୍ଷାକର ।

ଓଝା — କିଏ ତମେ ? ମା'ଙ୍କର ଏଇ ମାଜଣା ବେଳେ କୁଆଡ଼େ ଚାଲିଆସିଲ ? କିଏ କିହୋ ତମେ ?

ଚୈତନ୍ୟ — ମୁଁ ହଜୁର ଚଇତନ ବେହେରା ! ବିନ୍ଦାସ ଗଣନାଟ୍ୟର ମେନେଜର ! ମାଲିକ ମୋର କୋଡ଼ିଏ ଏକର ଜମି ବିକି ପାର୍ଟି କରିଚି ! ଲଗେଇଚି ଅଶୀ ଲକ୍ଷ । ଦି ବରଷରେ ପାଇଚି କୋଡ଼ିଏ... ପାର୍ଟି ଚାଲୁନି ।

ଓଝା — ପାର୍ଟି ଚାଲୁନି କଣ ? ତମ ଭଳିଆ ମେନେଜର ଥାଉ ଥାଉ ପାର୍ଟି ଚାଲୁନି ?

ଚୈତନ୍ୟ ଆମ ପାର୍ଟିକୁ ଗୁଣି କରା ହେଇଚି ।

ଓଝା କିଏ କରିଚି ଜଣା ପଡ଼ିଯିବ !

ଚୈତନ୍ୟ ମା' ଗୋ' ! ଅଂଧକୁ ଆଖି ଦେଇଚୁ, କାଲାକୁ କାନ ଦେଇଚୁ ! ଗରିବକୁ ଧନ ଦେଇଚୁ ମା' ! ପ୍ରେମିକକୁ ମନ ଦେଇଚୁ ! ମୋ' ବିନ୍ଦାସ ଗଣନାଟ୍ୟଟାକୁ ମନି ଦରକାର, ଖାଲି ମନି !! ମା' ।

ଓଝା କାହା ନାଟକ କରୁଚ ଏବର୍ଷ ?

ଚୈତନ୍ୟ ଆଜ୍ଞା ଅରିନ୍ଦମ ମହାପାତ୍ର ! ଏକଦା ବିରାଟ ନାଟ୍ୟକାର ଥିଲେ ଆଜ୍ଞା । ବହି ଗୋଟେ ଲେଖିଦେଲେ କୋଟିଏ ଟଂକା ରୋଜଗାର ହଉଥିଲା । ତାଂକୁ ବି ଗୁଣି ହେଇଯାଇଛି ।

ଓଝା ଯାଅ... ମୁଁ ପୂଜାରେ ବସିବି... ତମ କଥା ଜଣେଇ ଦେବି ମା'କୁ । ଯାଅ – ଦକ୍ଷିଣାଟା ଦେଇକି ଯାଅ –

(ଚୈତନ୍ୟ ଜୁହାର ହେଲେ । ପଇସା ଦେଲେ, ଓଝା ଟଂକାଟା ନେଉ ନେଉ ଆଲୁଅ କଟିଲା । ଠିକ୍ ତା' ପୂର୍ବରୁ ସୁହାସିନୀ ପ୍ରବେଶ କରି ଟଂକା କାରବାର ଦେଖିଲେ ।)

୦୦୦



## ଦୃଶ୍ୟ – ୫

(ମଂଚ ଅଂଧାର । ଅଂଧାରରେ ଯେଉଁ ସ୍ୱଚ୍‌ଟି ଜଳୁଛି ଓ ଲିଭୁଚି ସେଥିରେ ଦିଶୁଛଂତି ନାଟ୍ୟକାର । ସେ ନିଜ ଟେବୁଲ ଉପରେ ବସି କଣ ଗୋଟେ ଲେଖୁଛଂତି । ୩୦ ସେକେଣ୍ଡ ପରେ ଜଣାଗଲା ଯେ ତାହା ଏକ ବର୍ଷଣ ମୁଖୀ ମଧ୍ୟଯୁଗୀୟ ରାତି । ମନେ କରନ୍ତୁ କାଳିଦାସଙ୍କ ସମୟର କିମ୍ବା ଜଗନ୍ନାଥ ଦାସଙ୍କ ସମୟର । ଆକାଶରେ ବର୍ଷଣମୁଖୀ ମେଘ । ବିଜୁଳି ମାରୁଛି ଏବଂ ଘଡ଼ ଘଡ଼ିର ଭୟଂକର ଶବ୍ଦ । ଆବହ ସଂଗୀତ ଘଡ଼ଘଡ଼ିର ସ୍କେଲ୍‌ରୁ ଆରମ୍ଭ ହୋଇ କୌଣସି ଏକ ଗୀତର ତାଳଦ୍ୱାରା ସଂଗୀତାୟିତ ହେଲା ଏବଂ ନାରୀ କଂଠରେ ଶୁଭିଲା ଭାଗବତର ଗୀତ । ଲୟ ମଧ୍ୟମରୁ ଦ୍ରୁତ ଭିତରେ । ପ୍ରଥମେ ଆଳାପ ଓ ତାପରେ ଗୀତ ।)

ଗୀତ　　ମେଘ ମିଳିଲେ ଶୂନ୍ୟ ପଥେ
ବିଜୁଳି ଶବଦ ସଂଗୀତେ
ଭୂମି ସାଗର ଶୂନ୍ୟେ ବ୍ୟାପୀ
ନୀଳ ଜୀମୂତ ବିଶ୍ୱରୂପୀ ॥

(ତା'ପରେ ଦ୍ରୁତ ଲୟରେ ଆବହ ଯଂତ୍ର ସଂଗୀତ । କିମ୍ବା ମହ୍ଲାର ରାଗରେ ଏକ ଦ୍ରୁତ ଆଳାପ । ତାରି ଭିତରେ (କ)

ଆଲୋକିତ, ହେଲା ଅରିନ୍ଦମଙ୍କ ପଢ଼ା ଟେବୁଲ ଓ ୩୦ ସେକେଣ୍ଡ ପରେ ଆଲୋକ ନିର୍ବାପିତ ହେଲା । (ଖ) କଦମ୍ବ ଗଛଟି ଆଲୋକିତ ହେଲା ଏବଂ ଲାଲ ରଂଗରେ ଦୃଶ୍ୟ ହେଲା ବାଘଛାଲର ପୋଷାକ ପିନ୍ଧିଥିବା ଓ ଦେହସାରା ଛୋଟ ଛୋଟ ସାପ ଗୁଡ଼େଇ ହେଇ ରହିଥିବା ନାରୀ ମୂର୍ତ୍ତି । ନାରୀଟି ତାର ଆଲୋକିତ ପୁଷ୍ପଧନୁରୁ ବାଣ ନିକ୍ଷେପ କଲା ଅରିନ୍ଦମ ମହାପାତ୍ରର ମୁଣ୍ଡକୁ ଏବଂ ଶରଟି ଯାଇ ବାଜିଲା ତାର ମୁଣ୍ଡରେ । ଏହା ଆଲୋକ ଓ ଆବହ ସଂଗୀତରେ ଏକ ଭୂଚଳନର ଭ୍ରାନ୍ତି ସୃଷ୍ଟି କରିବା ଉଚିତ ।

ଧ୍ୟାନମଗ୍ନ ନାଟ୍ୟକାର ବିବ୍ରତ ଓ ବିଚଳିତ ହେଲେ । ତାଂକ ଶରୀର ଅସ୍ୱାଭାବିକ ଭାବେ ଥରିବାକୁ ଲାଗିଲା । ଅଂଧାର ଭିତରେ ଖୁବ୍ ଜୋର୍‌ରେ ଚିତ୍କାର କରି ଉଠିଲେ ନାଟ୍ୟକାର ଅରିନ୍ଦମ ମହାପାତ୍ର ।)

ନାଟ୍ୟକାର — ଆଃ... ଆଃ ! !... ଆଃ... ମୋ' ମୁଣ୍ଡ... ଓଃ ! !

(କ୍ରମେ କ୍ରମେ ଆଲୋକ କେନ୍ଦ୍ରିତ ହେଲା ତାଂକ ଉପରେ । ଆସ୍ତେ ଆସ୍ତେ ଆଲୋକ ପ୍ରଗାଢ଼ ଓ ତୀବ୍ର ହେଲା ବେଳକୁ ନାଟ୍ୟକାର ଚୌକୀ ଉପରୁ ଉଠିପଡ଼ିଲା ଓ ଉପରେ କୋଉଠି ଅଛି ବୋଲି ଭାବି ଝୁଲୁଥିବା ସ୍ୱଚ୍ ଆଲୁଅ ଗୁଡ଼ାକୁ ଗାଳିଦେଲା ।)

ନାଟ୍ୟକାର — କିଏ ବେ ତମେ ଲାଇଟ୍ ? ମୋ' ମୁହଁ ଉପରେ କାଇଁକି ପକଉଚ ? ମୋ ମୁଣ୍ଡକୁ ଖାଲି ମାଡ଼ ହଉଚି । ତଂତ୍ର ମାଡ଼ । ଲିଭାଅ ସେଇ ଆଲୁଅ ! !

(ଭାଡ଼ି ଉପରେ ବସିଥିବା ଯୋଗିନୀ ଉପରେ ଆଲୋକ । ସିଏ ହସିଲା)

ମନର ବନସ୍ତ ପୋଡ଼ି ଯାଉଛି । ଯାହା କିଛି ରହିଥିଲା ଲଟା

ବୁଦା ଘାସ ପରି... ସବୁ ଚାଂଛି ନେଇଗଲା... ଝାଡୁ ବୁଲେଇ ଦେଲା ମୋର ସ୍ମୃତିର ଗନ୍ତାଘରେ । (ପୁଣିଥରେ "ହାଃ ହାଃ" ହେଇ ହସିଲା ସେଇ ରହସ୍ୟମୟୀ ନାରୀ)

ନାରୀ ତୁ' ଶଳା ଗୋଟେ କୁକୁର ! ମୁଁ ତୋ' ଭିତରକୁ ଗୋଟେ ପିଶାଚ ପଠେଇ ଦେଇଛି ବେ ! ଶନିବାର ଦିନ ମଶାଣୀ ଚଣ୍ଡୀ ପାଖରୁ ଗୋଟେ ଭୂତ ବି ପୁରେଇ ଦେଲି ବେ ଶଳା ନାଟ୍ୟକାର ! ଯାହା ଲେଖିବୁ... ସବୁ ଧ୍ୱଂସ ହେଇଯିବ ତୋର ! ତୋ' ନାଟକ ହେବ ତୋ' ଅଯୋଗ୍ୟତାର କାରଣ ।

ଅରିନ୍ଦମ କାହିଁକି ? ମୁଁ ତ ତୋର କିଛି କ୍ଷତି କରିନାହିଁ । ମୁଁ ମୋର କଳ୍ପନାର ଆକାଶକୁ ଚାହିଁ ଗୋଟେ ଦୃଶ୍ୟବିଂବ ତିଆରି କରୁଥିଲି । ତିଆରି କରିବାର ପ୍ରତିଶୃତି ମାଗୁଥିଲି... ତାରାମାନଂକୁ !

ନାରୀ କିଛି ମିଳିବ ନାହିଁ । ଯୋଉ ପର୍ଯ୍ୟନ୍ତ ମୁଁ ଏ କଦମ୍ବ ଗଛର ଡାଳି ଉପରେ ବିଦ୍ୟମାନ ଅଛି ତୋ' ଚେତନାର ସ୍ରୋତ ଶୁଖି ଯିବ । ତୋ' ଦ୍ରଷ୍ଟାପଣ କେବଳ ପଶୁତ୍ୱ ପର୍ଯ୍ୟନ୍ତ ସୀମିତ ହୋଇ ରହିବ ନାଟ୍ୟକାର ! ଗୋଟେ ଚିଲ ଯେତିକି ଦେଖି ପାରିବ, ତୁ ସେତିକି ବି ଦେଖି ପାରିବୁ ନାହିଁ । ଗୋଟେ ମୂଷା ଯେତିକି ଶୁଂଘି ପାରିବ ତୁ ପାରିବୁ ନାହିଁ । ତୁ' ଗୋଟେ କୁକୁର ।

ଅରିଂଦମ ମୁଁ ତ କୁକୁର ହେଇ ନାଟକ ଲେଖି ପାରିବି ନାହିଁ । ଯଦି ମୋ' ଭାଷାରେ ଶକ୍ତିଥାଏ... ଯଦି ମୋର ସଂଳାପ ମଂତ୍ର ହେଇ ଯିବାର କ୍ଷମତା ପାଏ... ଯଦି ମୋର ଦୃଶ୍ୟବିଂବ ଅଦୃଶ୍ୟମାନଂକୁ ଭେଦି ସେମାନଂକୁ ପ୍ରକଟ କରିବ... ମୁଁ ତୋ' ସାଂଗରେ ଯୁଦ୍ଧ କରିବି ଅପଶକ୍ତି ! ମୋ' ଭବିଷ୍ୟତର ରଂଗମଂଚଖମାନଂକୁ ପୁଣିଥରେ ନୂଆ ପାଦ ପ୍ରଦୀପ ଲଗେଇ ଆଲୋକିତ କରିବି ।

ନାରୀ — ତା'ପୂର୍ବରୁ ମୁଁ ତତେ ହତ୍ୟାକରିବି। ମୋ' ବିଦ୍ୟା ଆଗରେ ତୁ' ଠିଆ ହେଇ ପାରିବୁନିରେ ଯାତ୍ରାବାଲା। ତୋ' ମୁଣ୍ଡକୁ ମୁଁ ନଣ୍ଡା କରି ଦେଇଚି। ଆଉ ତା' ଉପରେ ଛାଡ଼ି ଦେଇଚି ମୋ' ତଂତ୍ର ବିଦ୍ୟାର କ୍ଷମତାର ଚିହ୍ନ। ଦେଖେ... ଯଦି ଦେଖି ପାରୁଚୁ, ଦେଖ ତୋର ମୁଣ୍ଡରେ କଣ ଅଛି? ଗୋଟେ ବିରାଟ "ନାହିଁ"ର ସଂକେତ!

(ଆଲୁଅ ପୁଣି କେନ୍ଦ୍ରିତ ହେଲା ତାଂକ ମୁଣ୍ଡ ଓ ଦେହ ଉପରେ। ପ୍ରବେଶ କଲେ ସୁହାସିନୀ। ତାଂକ ପାଖକୁ ଆସିଲେ, ହୁଳ ହୁଳି ପକାଇଲେ ଓ ଡାହାଣ ହାତରେ ଧରିଥିବା ଦୀପ ବୁଲାଇଲେ ଓ ବାମ ହାତରେ ଧରିଥିବା ଘଣ୍ଟିଟା ବଜେଇଲେ)

ସୁହାସିନୀ — ଯ ଯତ୍ର ସଂସ୍ଥିତା ଭୂତା ସ୍ଥାନଂ ଆଶ୍ରିତ ସର୍ବଦା
ବେତାଳାଶ୍ଚ ପିଚାଶାଶ୍ଚ ବାଡ଼ିଖିଆ ପାଟଣାଗଡ଼ିଆ ଦାରୀ ଛୁଆ ଅପସର୍ପନ୍ତୁ ତେ ସର୍ବେ ରଇଜଳେ କୋରାପୁଟିଆ ଅସଭ୍ୟ ଗୁଣିଆ।

(ଏହା କହି ଘଣ୍ଟି ବଜେଇଲେ ସୁହାସିନୀ। କାଳ୍ପନିକ ଧଳା ତିଳ ଫୋପାଡ଼ିଲେ ଚାରି ପଟକୁ, ମାଜଣାର ବାଜା ବାଜୁଥିଲା ଓ ସୁହାସିନୀଙ୍କ ପଦକ୍ଷେପରେ ଏକ ନୃତ୍ୟର ଦୋଳନ ଥିଲା)

ସୁହାସିନୀ — ଏଥର ଲେଖ। କିଛି ହବନି...

ନାଟ୍ୟକାର — (ସେ ନିଜ ଚୌକୀ ପାଖକୁ ଯିବାକୁ ଚାହିଁଲେ। କିଂତୁ ମୁଣ୍ଡକୁ ଗୁଣି ମାଡ଼ ହେଇଥିବାରୁ ମୁଣ୍ଡ ଘୁରି ବୁଲୁଥିଲା ଏବଂ ସେ ଟାଳୁ ଟାଳୁ ପଡ଼ିଯିବେ ବୋଲି ଭାବୁଥିଲେ। ସେ ଟେବୁଲଟାକୁ ଧରି ତଳେ ପଡ଼ିଯିବାର ଭୟରୁ ନିଜକୁ ରକ୍ଷା କଲେ।)

ସୁହାସିନୀ — କଣ ହେଲା?

ନାଟ୍ୟକାର — ମୁଣ୍ଡଟାକୁ ମାରିଦେଇଚି। ମୁଂଡ଼ ବୁଲେଇ ହଉଚି। ମୋର

ସୃଜନଶକ୍ତି ଅପହରଣ କରା ହଉଚି ।

ସୁହାସିନୀ ଆଉ କଣ ହଉଚି ?

ନାଟ୍ୟକାର ମୁଣ୍ଡଟା ଟାଂଗର ଭୂଇଁ ହେଇଯାଉଚି... ଏମିତି ଟାଂଗର ଯେ ବର୍ଷାଦିନେ ମଧ୍ୟ ଘାସଟିଏ କଅଁଳିବନି । ଆଉ ଲେଖିବି କଣ ? ନାଟକଟିଏ ଲେଖିବା ପାଇଁ ଶବ୍ଦ ଦରକାର ନାଇଁ ସୁହାସିନୀ... ଗୋଟେ କଳାତ୍ମକ ଯୋଜନା ଦର୍କାର । କବିପରି ନାଟ୍ୟକାର ଶବ୍ଦର ସ୍ରଷ୍ଟା ନୁହେ - ତାକୁ ଦ୍ରଷ୍ଟା ହେବାକୁ ପଡ଼ିବ । ମଂଚଟା ମତେ ଆଉ ଦିଶୁନି... ଦିଶୁନି ତାର ଆକାର ଆଉ ଆୟତନ... ଦିଶୁ ନାହାନ୍ତି ଚରିତ୍ରମାନେ ।

ସୁହାସିନୀ ତା'ହେଲେ ଭାବିବାକୁ ପଡ଼ିବ ଏଇଟା ଗୋଟେ ବିରାଟ ଦୁର୍ଘଟଣା ।

ନାଟ୍ୟକାର ହଁ । ଦୁର୍ଘଟଣା । ଦୁର୍ଘଟଣାମାନଂକୁ ସଜାଡ଼ି ନ ପାରିବାର ବିକଳ ପଣ ଆଉ ଅସହାୟତା ଭେଦି ଯାଉଚି ମୋର ଶିରା ପ୍ରଶିରାରେ ।

ସୁହାସିନୀ କ'ଣଲେଖିବ ତାହେଲେ ? ଏ... ଯାତ୍ରା କାହାଣୀଟାରେ କଣ ଲେଖିବ ?

ନାଟ୍ୟକାର ଏଗୁଡ଼ା । ଏ ଅସହାୟତା, ଉଦ୍‌ବେଳନ, ଅସ୍ଥିରତା, ଅଶ୍ୱସ୍ତି ପୀଡ଼ା, ଆଉ ଗୋଟେ କଂପିତ ହୃଦୟର ଆବେଗ ।

ସୁହାସିନୀ ଏତେ କଥା ଲେଖୁଚ ? ତା'ମାନେ ତମର ମୁଣ୍ଡଟା ପୁରା ଖରାପ ହେଇ ଯାଇଚି । ଆଜି ସୋମବାର । ଆଜି ରାତିଟା ଲେଖା ଲେଖି ଛାଡ଼ି ତମେ ମୋ' ସାଂଗରେ ଚାଲିଆସି ପାରିବ ? ଆସ, ଦେଖିବ ମୁଁ ତମର ମୁଣ୍ଡ ଠିକ୍ କରିଦେବି ।

ନାଟ୍ୟକାର ତମେ ଯୋଉ ଗୁଣିଆ ପାଖକୁ ନବ... ସିଏ କଣ ମୋର ସ୍ମୃତିଶକ୍ତି ଫେରେଇ ଆଣି ପାରିବ ?

ସୁହାସିନୀ — ତମର ସ୍ମୃତିଗୁଡ଼ାକ ଫେରିଲେ କି ନାଇଁ ମୁଁ କେମିତି ଜାଣିବି ? ତମେ ହିଁ ଜାଣିବ ।

(ନାଟ୍ୟକାର କିଛି ଠିକ୍ କରି ପାରିଲେ ନାହିଁ । ଖାଲି ଇତଃସ୍ତତଃ ହେଲେ ।)

ସୁହାସିନୀ — ପୁଣି କଣ ହେଲା ? ନା, ପୁଣି ଥରେ ଯିବା ସେ ଓଝା ପାଖକୁ ?

ନାଟ୍ୟକାର — ରୁହ ରୁହ ରୁହ । ଟିକିଏ ରହ ।

(ସୁହାସିନୀ ଅଟକି ଗଲେ)

ନାଟ୍ୟକାର — ଅକ୍ଷୟ ମହାନ୍ତିର ସେ ରେକର୍ଡଟା ଅଛି ?

ସୁହାସିନୀ — କୋଉ ରେକର୍ଡ ?

ନାଟ୍ୟକାର — ସ୍ମୃତି ତମେ ପାଉଁଶ ତଳର ନିଆଁ/ ସ୍ମୃତି ତମେ ଅଂଗାରେ ଲେଖା ନାଁ...

ସୁହାସିନୀ — ଅଛି... ଅଛି...

ନାଟ୍ୟକାର — ପୁରା ଭଲ୍ୟୁମ୍ ଦେଇ ବଜେଇଲ ଟିକିଏ...

(ସୁହାସିନୀ ଗଲେ ଭିତରକୁ । ଗୀତ ବାଜିଲା । ନାଟ୍ୟକାର ଚୌକିରେ ବସିଲେ । Swivel ଚୌକୀକୁ ବୁଲାଇ ପଛପଟର ବାରଲାଇଟ୍‌ରେ ତିଆରି ଆଲୋକର ଝର୍କାଆଡ଼କୁ ଚାହିଁଲେ । ସେଇଠି ଜଳିଲା ସବୁଜ ଆଲୋକ । ଗୋଟେ ଝିଅଟିଏ ଆସି ଠିଆ ହେଲା । ହାତରେ ତାର କଡ୍‌ଲେସ୍ ମାଇକ୍ରୋଫୋନ୍ । ଗୀତର ଶେଷ ଅଂଶରେ ସିଏ ପହଂଚିବ ଏବଂ ମନ ଦେଇ ଗୀତଟାକୁ ଶୁଣିବ । ଗୀତ ସରିଲା ପରେ କହିବ । ଝିଅଟିର ବୟସ ପାଖାପାଖି ୩୨ । ସେ ଉଗ୍ର ଆଧୁନିକା ଓ ତାର ନାଁ ଡୋନା ସାମଲ ।)

ଡୋନା — (ତାଳି ମାରି) ବାଃ ! ଏକ୍ସେଲେଣ୍ଟ୍ ! ବଢ଼ିଆ ଗୀତ ଗାଉଥିଲେ

ଆପଣ !... ହାଲୋ ! ୟୁ ଦେୟାର୍ ! ଶ୍ରୀମାନ ନାଟ୍ୟକାର ! ଖୋକା ଭାଇର ଗୀତଟା କେବେ ଶିଖିଲେ ?

ନାଟ୍ୟକାର (ଆଶ୍ଚର୍ଯ୍ୟ ହୋଇ ହ୍ୱିଲ ଚେୟାର ବୁଲାଇଲେ ଝରକା ପଟକୁ ଏବଂ ପଚାରିଲେ) କିଏ... କିଏ ତମେ ?

ଡୋନା ଜାଣି ପାରୁନାହାନ୍ତି ? ଏଇଟା ପରା ଆପଣଂକର ସ୍ମୃତିର ଝରକା ? ତାରି ଭିତରେ କିଏଗୋଟେ ଲୁଚକାଳି ଖେଳୁଚି ଦିଶୁନି ଆପଣଙ୍କୁ ? ତା' ହେଲେ ଭାବିନିଅନ୍ତୁ... ମୁଁ ଆପଣଂକର କୌଣସି ଗୋଟାଏ ପୁରୁଣା ନାଟକର ହିରୋଇନ୍ ! ମୋ ନାଁ ଡୋନା ସାମଲ । ଚିହ୍ନୁଛନ୍ତି ?

ନାଟ୍ୟକାର ଡୋନା ? ଡୋନା.. ଡୋନା... ଡୋନା... ଡୋନା... (ମନେପଡ଼ିଲା) ମୋର "ଅପହଂଚ" ନାଟକରେ ତୁ' ସେ ବର୍ଷ ହିରୋଇନ୍ ଥିଲୁ ନା ?

(ହଠାତ୍ ସୁରମଣ୍ଡଳରେ ଗୋଟେ ଝଂକାର ଶୁଭିଲା ଓ ଆରମ୍ଭ ହେଲା ପଖାଉଜ୍‌ରେ ଗୋଟେ ଓଡ଼ିଶୀ ତିହାଇ ସହ ତାଳ । ସେଇ ତାଳରେ ଡୋନା ଭାସି ଭାସି ଆସିବ ଝରକା ଡେଇଁ / ଅତିକ୍ରମ କରି ନାଟ୍ୟକାର ପାଖକୁ । ତାଳ କଟିବ । ଡୋନା ଫ୍ରିଜ୍ ହେଇ ଠିଆ ହେବ ଏକ ଯୌନ ଉଦ୍ଦୀପକ ଅଂଗହାର ଦେଖାଇ । ପୁଣି ଆବହ ସଂଗୀତ । ଏଇଥର ତାଳ ପରିବର୍ତ୍ତନ କରାଯାଇ ପାରେ । ଡୋନା ଯାଇ ନାଟ୍ୟକାର ବସିଥିବା ଚୌକୀର ପଛପଟେ କିମ୍ବା ଡାହାଣ/ବାମ ପଟେ ଠିଆ ହେଲା । ନାରୀ କଂଠରେ ଗୋଟାଏ ଓଡ଼ିଶୀ ଗୀତର ଆଳାପ ସାରେ ଗାମା ବାଣୀରେ ନିଅନ୍ତୁ । ତାରି ଭିତରେ ନାଟ୍ୟକାରଙ୍କୁ ବିଭିନ୍ନ ସ୍ପର୍ଶକାତର ସ୍ଥାନରେ ସ୍ପର୍ଶ କଲା । ନାଟ୍ୟକାର ନିସ୍ପନ୍ଦ ହୋଇ ବସିଥିଲେ ।)

ଡୋନା କଣ ହେଲା ନାଟ୍ୟକାର ? ତମର ଦେହତ ଆଗରୁ ବେଶ୍‌ଗରମ ଥିଲା । ଛୁଇଁ ଦେଲେ ସବୁ ଅଂଗ ପ୍ରତ୍ୟଂଗ

ଜାତୀୟ ସଂଗୀତ ଗାଇଲା ପରି ଠିଆହେଇ ସମ୍ମାନ ଜଣାଉଥିଲେ। ଏବେ କାଇଁକି ଏମିତି "ଆଇସ୍ କୂଲ୍" ହେଇ ଯାଇଛି ?

ନାଟ୍ୟକାର ନାଟକଟା ସେମିତି ଗୋଟେ ରାଜନୀତି ଡୋନା। ଥଣ୍ଡା ଗରମର ଖେଳ। ତମର ବହି ଯଦି ସୁପରହିଟ୍ ହେଇଯାଏ - ତା' ହେଲେ ଅସୁବିଧା। ସମାଜ ତମକୁ ସମ୍ମାନ ଦେଖେଇବନି... ଇର୍ଷା କରିବ। ପ୍ରତିଭା ଅଛି ବୋଲି ଖାତିର କରିବନି... ଅଳିଆ ଗଦାରେ ଫୋପାଡ଼ି ଦବ। ତମର ଯଦି ନିଅଁ ଟାଣ ଅଛି ତମେ ଠିଆ ହବ। ନହେଲେ ଭୂମିକଂପରେ କୋଠା ଭୁଷୁଡ଼ିଗଲାପରି ତମର ସବୁ କାହାଣୀ ଭୁଷୁଡ଼ି ପଡ଼ିବ। ମାନ, ଇଜ୍ଜତ, ପ୍ରତିଷ୍ଠା... ସବୁ।

ଡୋନା ନା, ମୁଁ ତମକୁ ଭୁଷୁଡ଼ି ଯିବାକୁ ଦେବିନି ନାଟ୍ୟକାର। ତମକୁ ଯେମିତି ହେଲେ ଠିଆ କରେଇବି...! ମୋର ମନେ ଅଛି... ଦାମନ ଯୋଡ଼ିରେ ଫେଷ୍ଟିଭାଲ୍ ଚାଲିଥାଏ, ଆମେ ଗାଡ଼ି ନେଇ ଚାଲିଗଲେପାହାଡ଼ ଉପରର ସେଇ ଡାକ ବଂଗଳାକୁ... କେଡ଼େ ସତେଜ ଥିଲା ତମର ଦେହ। ପୃଥିବୀର ପ୍ରଥମ ଆଦିମ ମଣିଷ ପରି ଡେଉଁଥିଲ ତମେ... ଏ ଡାଳରୁ ସେ ଡାଳ... ସେ ଡାଳରୁ ଏ ଡାଳ!! ଜହ୍ନରାତି ପାହାଡ଼ ତଳର ଆଦିବାସୀ ବସ୍ତିରେ ପୁଚି ଖେଳୁ ଥାଏ... ଆଉ ତାରି ଭିତରେ ତମେ ଲେଖୁଥିଲ ଗୋଟେ ଘଣ୍ଟିକିଆ ଛୋଟ ନାଟକ।

ନାଟ୍ୟକାର ହଁ। ଛୋଟ ନାଟକ! ଯେସ୍!... ସେ ନାଟକଟାରେ "ମୁଁ" ଓ ମୋ' ଭିତରେ ଥିବା "ଆଉ ଗୋଟେ ମୁଁ" ଭିତରେ ସବୁବେଳେ ଗଣ୍ଡଗୋଳ ଲାଗୁଥିଲା। ମନ ଭିତରେ ଅହରହ ସଂଳାପ ଚାଲୁଥିଲା।

ଡୋନା ମନେ ମନେ ଡାଇଲଗ କହୁଥିଲ ? କହୁଥିଲ ତ କହୁଥିଲ... ସେଗୁଡ଼ା ଶୁଣୁଥିଲ କାହିଁକି ?

ନାଟ୍ୟକାର (ହସିଲେ ନୀରବରେ)

ଡୋନା ମଦ ଦବ ପିଇବା ପାଇଁ ?

ନାଟ୍ୟକାର ପିଇବ ?

ଡୋନା (ରାଗିଲାଭଳି) ଆଉ କ'ଣ କରିବି ? ଗଂଗାପାଣି ଭାବି ମୁଣ୍ଡରେ ଛିଂଚିବି ? (କିଛି ସମୟ ବୁଲିଲେ) ଶୁଣ – ମଦ ଦେଲେ ଆଜି ରାତିଟା ତମ ପାଖରେ ଶୋଇବି । ନ ହେଲେ ଚାଲିଲି । (ଯାଉଥିଲା)

ନାଟ୍ୟକାର ଏ...ଏ...ଏ... ଡୋନା ! !

(ଡୋନା ଅଟକିଗଲା)

ଏଇଠି ଅଛି... ମୋ'ପାଖରେ... ନେ'...

(ନାଟ୍ୟକାର ତାଙ୍କ ଚେୟାର ତଳୁ ଗୋଟେ ଅଧାପିଆ କ୍ୱାଟ୍ ବୋତଲ ବାହାର କରି ତା' ପାଖକୁ ନେଲେ । ଡୋନା ପୁରା ବୋତଲଟା ଖାଲି କରିଦେଇ ନାଟ୍ୟକାରଙ୍କ ବାହୁକୁ ଧରି କହିଲା)

ଡୋନା ଥ୍ୟାଙ୍କ୍ ୟୁ ! ଆସ ! ଏଇଠି ପ୍ରଚୁର ଆଲୁଅ । ଯାହା କଲେ ଲୋକଙ୍କୁ ଦିଶିବ । ଚାଲ... ଆଉ କୋଉଠିକି ଚାଲିଯିବା... କୋଉ ଗୋଟେ ଜଂଗଲ ଭିତରକୁ । ଅଗନାଗ୍ନି ବନସ୍ତ ଭିତରକୁ... ଯୋଉଠି ଅଂଧାର ହେଇଥିବ... । ଆମେ ଯାହା କଲେ ବି କିଛି ଦିଶୁ ନଥିବ ! !

ନାଟ୍ୟକାର ଆଗରୁ... ପାଖାପାଖି ଚଉଦ/ପନ୍ଦର ଥର ଏମିତି ଆମେ ଜଂଗଲ ଭିତରେ ଶୋଇଛେ ଡୋନା... ! ଚଉଦ କି ପନ୍ଦର ଥର... ଦାମନଯୋଡ଼ି, କୋରାପୁଟ, ସୁନାବେଡ଼ା, ଝାକମ, ବାଲିଗୁଡ଼ା, ତପ୍ତପାଣି, ଶିମିଳିପାଳ, ରାୟଗଡ଼ା, ନାରାୟଣପାଟଣା, ଲକ୍ଷ୍ମୀପୁର, ସମ୍ବଲପୁର ପାନ୍ଥ ନିବାସ, ଢେଙ୍କାନାଳ, ବୌଦ୍ଧ ଆଉ କାଳଡ୍ୟାମ୍... ଠିକ୍ ମନେ

ପଡୁନି... ତମେ ବୋଧେ ପ୍ରଥମେ ଭୋଦ୍‌କା ପିଉଥିଲ ଲାଇମ୍ କଡ଼ିଆଲ୍ ସାଂଗରେ। ତାପରେ ୱାଇନ୍ ପିଇଲ... ତାପରେ ରମ୍‌ପିଇଲ ଆଉ ବୌଦ୍ଧରେ ଖାଲି ହ୍ୱିସ୍କି... ଆଉ ସୋଡ଼ା... ନାଇଁ ନାଇଁ... ଆଇସ୍ ପକେଇ ବ୍ଲାକ୍ ଡଗ୍ ପିଉଥିଲ...

ଡୋନା ନା ! ଆଜି ଆମେ ଖାଲି ବିଅର୍ ପିଇବା... ଆଉ ଯୋଉଠି କି ଯିବା... ସେଇଠି ଚିତାବାଘ, ବିଲୁଆ, ଗଧିଆ କିମ୍ବା ଅଜଂଗର ସାପଥିବା ଦରକାର। ଚାରିପଟୁ ଝିଂକାରୀର ରାବ ଶୁଭୁଥିବ... ଆସ... ସେ ପଟ ଜଂଗଲକୁ ଯିବା...

(ସେମାନେ ଚାଲିଗଲେ। ମଂଚର ଆଲୋକ ନୀଳବର୍ଣ୍ଣ। ରାତିର ସଂକେତ। ଝିଂକାରୀର ଶବ୍ଦ।)

ଦରୱାନ (ଠିଆ ହେଇ ମାର୍ଚ୍ଚିଂ କଲା) Left Right, Left Right! Halt! ସାର୍ ଟିକିଏ ରହିଯାନ୍ତୁ... ଜଂଗଲ ପଟକୁ ରାସ୍ତା ନାହିଁ।

ଡୋନା କାହିଁକି ?

ଦରୱାନ ଆପଣଙ୍କ ସାଙ୍ଗରେ କଥା ହେବାକୁ ମନା, ଚୁପ୍‌ଚାପ୍ ଠିଆ ହୁଅନ୍ତୁ। (ନାଟ୍ୟକାରକୁ) ଆପଣ ତ ବର୍ତ୍ତମାନ ନାଟକ ଲେଖିବା କଥା ରାତି ହେଇଚି – ଚାରିପଟ ଶୂନ୍‌ସାନ – ଟ୍ରାଫିକ୍ ବଂଦ! ଲେଖୁ ନାହାନ୍ତି... ଏ ମାଡାମଙ୍କ ସାଂଗରେ କାଇଁକି... "ନାରେ ନାରେ" ହେବେ ?

ନାଟ୍ୟକାର Shut up!

ଦରୱାନ ତା' ହେଲେ ମତେ ବର୍ତ୍ତମାନ ଆପଣଂକ ମୁଣ୍ଡ ଭିତରେ ପଶିବାକୁ ପଡ଼ିବ। ଏକଲା କୌଣସି ଝିଅ ପିଲା ସାଂଗରେ ଯିବା ପାଇଁ ମାଲିକାଣୀ ମନା କରିଛଂତି।

ନାଟ୍ୟକାର ହେଲ୍ ୱିଥ୍ ଯୋର ମାଲିକାଣୀ ! (ଦରୱାନକୁ ଟାଣି ଆଣିଲେ ଚୌକି ପାଖକୁ! ଏଇଠି ବସ, ବାଏ ! ଚାଲିଗଲେ)



# ଦୃଶ୍ୟ – ୬

.(ପୂର୍ବ ଦୃଶ୍ୟର ଆବହ ସଂଗୀତ ଏବଂ ଆଲୋକ ସଂପାତ ଭିତରେ ପ୍ରବେଶ କଲେ ଅରବିଂଦ। ସେତିକି ବେଳକୁ ମଂଚର ଆଲୋକ ନୀଳ ଥିଲା ଏବଂ ଟି.ଭି.ରେ କଣ ଗୋଟେ ଦୃଷ୍ଟି ଆକର୍ଷଣ ଓ ବିଚଳନ କରୁନଥିବା ଦୃଶ୍ୟ ଚାଲିଛି ଏକ ଅନିର୍ଦ୍ଦିଷ୍ଟ ଚାନେଲରେ। ଦରୱାନ୍ ବସିଚି ନିଜ ସ୍ଥାନରେ। ଅରବିନ୍ଦ ପ୍ରବେଶ କଲେ ଓ ତାଂକୁ ଆଲୋକ follow କଲା। ସେ ଟି.ଭି.ଟା ଚାଲିବା ଦେଖି ସ୍ୱଗତୋକ୍ତି କଲେ।)

ଅରବିନ୍ଦ — ବାଃ! ଭଲ! ଟି.ଭି.ଟା ଚାଲିଛି – ଘରଟା ମେଲା। ଇଆଡ଼େ ଭାଇ ଚାଲିଗଲା ସେ ହିରୋଇନ୍‌ଟାକୁ ନେଇ? ଛି.. ଛି! ଏଗୁଡ଼ା କି ବାତରାମୀ? ଯାତ୍ରାବାଲା ବୁଦ୍ଧି? ହେଃ!

(ହଠାତ୍ ତାର ଆଖି ପଡ଼ିଲା ଦରୱାନ୍‌ଟା ଉପରେ। ପ୍ରଥମଥର ଦେଖୁଥିଲେ) ଏ ବାବୁ! ତମେ କିଏ? (ଦରୱାନ୍ ଠିଆ ହେଲା। ସାଲ୍ୟୁଟ୍ ମାରିଲା।) ଓ! ଦରୱାନ୍? ତମେ କେବେଠୁ ରହିଲ?

ଦରୱାନ — ମାସେ ହେଲା ସାର୍!

ଅରବିଂଦ — ଏ ବାବୁ ଗଲେ କୁଆଡ଼େ?

ଦରୱାନ — ହିରୋଇନ୍ ସାଂଗରେ ଗଲେ !

ଅରବିଂଦ — ମୁଁ ପଚାରୁଚି କୁଆଡ଼େ ଗଲେ ? (ଦରୱାନ୍ ଚୁପ୍) କାଇଁକି ଛାଡ଼ିଲ ତାଂକୁ ?

ଦରୱାନ୍ — ମୁଁ କେମିତି ଜାଣିବି ସାର୍ ?

ଅରବିଂଦ — ସେ ଦିଇଟା ଗଲେ ଶିମିଳି ପାଳ । ସେଇଠି ପାହାଡ଼ ଉପରେ ଗୋଟେ ଡାକବଂଗଳା ଅଛି ।

ଦରୱାନ — ଯାଆନ୍ତୁ । ଆପଣ କାଇଁକି ଟର୍‌ଚର୍ ହଉଚନ୍ତି ସାର୍ ?

ଅରବିଂଦ — ସେଇଠିକି ଗଲେ ସେ ହିରୋଇନ୍‌ଟା ଖାଇବାକୁ ମାଗିବ... ଆଉ ଭାଇ ତାକୁ ଖାଇବାକୁ ଦେଇ ଦେଇ ହାଲିଆ ହେଇଯିବେ !

ଦରୁଆନ — ହାଲିଆ ହୁଅନ୍ତୁ ସାର୍ ! ହାଲିଆ ହେଲେ ଯାଇ ଭଲ ଆଇଡିଆ ମିଳିବ ।

ଦରୱାନ — ଆପଣ ତାଂକୁ ଇର୍ଷା କରୁନାହାନ୍ତି ତ ସାର ?

ଅରବିନ୍ଦ — No, no, no! No ଇର୍ଷା ! ସିଏ ମୋର ବଡ଼ଭାଇ । ଆଉ ଆମେ ଦିଇଟା ଗୋଟିଏ ରୂପାଟଂକାର ଦି' ପାଖ । ସିଏ ଚିତ୍ ହେଲେ ମୁଁ ମାଖ ! ସିଏ ମାଖ ହେଲେ ମୁଁ ଚିତ୍ !

ଦରୁଆନ — ଆଜିକାଲି ସବୁ ହେଲାଣି ସାର୍ ! ଜଂଗଲ ଭିତରକୁ ପିଚୁ ରାସ୍ତା ହେଲାଣି । କାର୍ ଆଉ ଆଦିମ ଅଧିବାସୀ ଲୋକ ଏକାଠି ରହିଲେଣି... ଲଂଗୁଳି ଘୁସି ମରା ଆଦିବାସୀମାନଂକ ସାଂଗରେ ।

ଅରବିନ୍ଦ — ସେୟା ପରା ! ଭାଇ ଆମର ନିଜେ ଗୋଟେ ଜଂଗଲ ! ତାଂକ ମୁଣ୍ଡ ଭିତରେ ଗୁଡ଼ାଏ ବିଛୁଆତି ଆଉ ବାଇଡଙ୍କ ଗଛ ଅଛି... ବଣ ମଣିଷମାନେ ଅଛଂତି... ପ୍ରାଚୀନ ପ୍ରସ୍ତର ଯୁଗର ଆଦିମତା ଅଛି । ତଥାପି ମୁଁ ତାଂକୁ ସଭ୍ୟତାର ମଣିଷ କରି ଗଢ଼ିବାକୁ ଚାହେଁ । (ରାଗିଗଲା) ସେଇଥିପାଇଁ ! ସେଇଥିପାଇଁ

ମୁଁ ତମ ଉପରେ ରାଗୁଚି - ସେମିତିକା ଲୋକଟାକୁ ରାତି ଅଧିଆ ଜଂଗଲକୁ କାହିଁକି ପଠେଇଲ? ବୁଝିଲ?

ଦରୁଆନ ନାଇଁ ଆଗ୍ୟାଁ!

ଅରବିଂଦ କିଛିବୁଝୁନା? ବଢ଼ିଆ! ଟିଭିଟା ଏଇଠି ଚାଲିଚି... ଦେଖୁଚି କିଏ? ତୁ'ତ ସିଆଡ଼େ ମୁହଁକରି ଜୟ ବିଜୟ ଦୁଆରୀ ପରି ଅନେଇଚୁ!

(ଯାଇ ଟିଭିର ସୁଇଚ୍ ବଂଦ କଲେ ଓ ଫେରୁ ଫେରୁ ଟେବୁଲ ଉପରେ ଥିବା କାଗଜଗୁଡ଼ାକ ଦେଖିଲେ ।)

ଅରବିଂଦ ଅଧାଲେଖା ନାଟକର ଜଂଗଲ?(ପଢ଼ିଲେ) ମଲ୍‌ଟିଟ୍ରାକ୍ ଷ୍ଟୋରୀ (ବିରକ୍ତ ହେଇ ରଖିଦେଲେ) ଏଗୁଡ଼ା ଟ୍ରାଷ୍!ଆଉଟ୍ ଡେଟେଡ୍!

ଦରୁଆନ ଆଗ୍ୟାଁ (ପାଖକୁ ଦୌଡ଼ିଗଲା) କିଛି କହିଲେ?

ଅରବିଂଦ ତମ ନାଟ୍ୟକାର ଭିତରେ ରଘୁନାଥ ପଣ୍ଡାକି ଯଦୁମଣି କାନୁନ୍‌ଗୋ - ହୃଷିକେଶ ଷଡ଼ଙ୍ଗୀ - କାହାର ଗୋଟେ ଭୂତ ପଶିଯାଇଚି ।

ଦରୱାନ ନାଇଁ ସାର୍! ଭୂତ ଡାହାଣୀମାନେ ନାଟ୍ୟକାର ସାର୍‌ଙ୍କର ମୁଣ୍ଡ ଭିତରେ ପଶି ପାରିବେ ନାଇଁ ।

ଅରବିଂଦ କାଇଁକି?

ଦରୱାନ ଜମ୍‌ମା ପଶି ପାରିବେ ନାଇଁ । ଆମେ ସାର୍ ୱାନ୍ ୱେ ଟ୍ରାଫିକ୍ କରିଦେଇଚୁ... ।

ଅରବିଂଦ ୱାନ୍ ୱେ ଟ୍ରାଫିକ?

ଦରୱାନ ସେ ଝର୍କାଟା ଦେଖୁଛଂତି? ସେ ବାଟେ କ୍ୟାରେକ୍‌ଟରମାନେ ଆସନ୍ତି! କିଂତୁ ୟା'ରୁ କିଏ ସେପଟେ ଯାଇ ପାରିବେ ନାଇଁ ।

ଅରବିନ୍ଦ କ୍ୟାରେକ୍ଟର ମାନେ?

ଦରୱାନ ନାଟକର କ୍ୟାରେକ୍ଟର ସାର୍! ସେଇଟା ହେଲା ସ୍ମୃତିର ଝରକା । ସାର୍‌ଙ୍କର ମନେ ପଡ଼ିଲା ମାନେ ସିଧା ସେ ଲୋକମାନେ ଏଇ ବାଟେ ଚାଲି ଆସନ୍ତି!

ଅରବିନ୍ଦ ଏଇ ଯୋଉ ଝିଅଟା ଆସିଥିଲା, ସେଇଟା ବି ସେଇ ସ୍ମୃତିର ଝରକା ବାଟେ ଆସିଲା ?

ଦରୱାନ ଆଗ୍ୟାଁ ସାର୍!

ଅରବିନ୍ଦ ଯଦି ଭୂତ ଡାହାଣୀ ଆସି ଯାଆନ୍ତି ?

ଦରୱାନ ଜମ୍‌ମା... ! !(ମୁଣ୍ଡ ହଲେଇମନା କଲା)

ଅରବିନ୍ଦ ତଥାପି... ଦରୁଆନ୍... ତମେ ଏ ଝରକା ଫରକା ସବୁ ବଂଦ କରିଦିଅ... ସାର୍‌ଙ୍କର ଅଧା ଲେଖା ନାଟକଟା ମୁଁ କଂପ୍ଲିଟ୍ କରିଦେବି ।

ଦରୱାନ ଆପଣ... ?

ଅରବିନ୍ଦ ହଁ... ଆରେ ମୁଁ ବି ଗୋଟେ ନାଟ୍ୟକାର, ଜାଣିନା ? ୨୦/ ୨୫ଟା ନାଟକ ମୋର ମଂଚସ୍ଥ ହେଲାଣି । ଯାତ୍ରା ନାଟକ ଲେଖିନି କେବେ... ଦେଖିବା କେମିତି ହଉଛି ।

(ବସି ପଡ଼ିଲେ ଅରବିନ୍ଦ ।)

ତମେ ଯାଅ ଦରୁଆନ୍! ସେ ବାହାରେ ଜଗିବ ।

ଦରୱାନ ମୁଁ ବାହାରର ଦରୱାନ ନୁହେ ସାର! ଭିତରର । ମାନେ ମନ ଭିତରର । ନାଟକ ଲେଖିଲାବେଳେ ଯୋଉ ଚରିତ୍ର ଆଉ ଘଟଣାମାନେ ଆସିବେ... ମତେ ପଚାରି ଆସିବେ!

ଅରବିନ୍ଦ ବହୁତ ଘଟଣା ଆସିବେ... (ଲେଖିବା ଆରମ୍ଭ କଲେ)

ଦରୱାନ ଯୋଉ ସିକ୍ୱେନ୍‌ସ ଆସିବେ ଯୋଉ କ୍ୟାରେକ୍ଟର ସେଗୁଡ଼ାକର ଟ୍ରାଫିକ୍‌କୁ ମୁଁ କଣ୍ଟ୍ରୋଲ୍ କରିବି ସାର!

ଅରବିନ୍ଦ ତଥାପି... ମୁଁ କହୁଚି... ତମେ ବାହାରକୁ ଯାଅ –

ଦରୱାନ ଚାକିରୀ ପଳେଇବ ସାର୍ ! ମୁଁ ଅଡ଼ିନାରୀ ଦରୁଆନ ନୁହେ । ମନ ଭିତରକୁ ପଶୁଥିବା ଆଇଡିଆମାନଂକର ଦରୁଆନ । ମୁଁ ଏଇଠି ବସୁଚି । (ଦରୱାନ Right Down Apronରେ ଥିବା ଚୌକୀ ଉପରେ ବସିଲା ।

(ନାଟ୍ୟକାର ଉପରେ ଆଲୋକ । ତାହା କ୍ରମଶଃ ସ୍ତିମିତ ହେଲା)

ଆବହ ସଂଗୀତ ।

୦୦୦



## ଦୃଶ୍ୟ – ୭

(ଦୃଶ୍ୟ-୫ରେ ଆଲୋକ ଧିମେଇ ଆସିବା ଓ ଦୃଶ୍ୟ-୬ରେ ପୁନର୍ବାର ସ୍ପଟ୍ ଲାଇଟ୍ ଆସିବା ମଧ୍ୟରେ ସମୟ ବ୍ୟବଧାନ ୪୫ ସେକେଣ୍ଡରୁ ୧ ମିନିଟ୍ ହୋଇପାରେ । ନାଟ୍ୟକାର ଅରିଂଦମ ବାହାରୁ (ଜଂଗଲରୁ) ଫେରିଲେ । କିଂତୁ ଜଂଗଲର ପ୍ରକୃତିଟି ଅନ୍ତର୍ନିହିତ କରି ଆସିଥିଲେ । ତାଂକ ହାତରେ ଗୋଟେ କ୍ୱାଟ ବୋତଲ ମଦ ଥିଲା । ସେ ପ୍ରବେଶ କଲେ, ପିଇଲେ । ଯାରି ଭିତରେ ରାତିର ପ୍ରଭାବ ବିଲୁପ୍ତ ହେଲା ଓ ସୂର୍ଯ୍ୟୋଦୟ ହେଲା ବୋଲି ଜଣା ପଡ଼ିଲା ।)

ଅରିଂଦମ — ଭାଉଜ ? ଭାଉଜ କୁଆଡ଼େ ଯାଇଚି ?

ଅରବିନ୍ଦ — କଂଦରପୁର । (ଲେଖୁଥିଲେ)

ଅରିଂଦମ — କଂଦରପୁର ?

ଅରବିନ୍ଦ — ତାଂକର ଧାରଣା ତମ ଉପରେ ଗୋଟେ ଭୂତ କି ପ୍ରେତ କି କାଳିସୀ କିଏ ଗୋଟେ ସବାର ହେଇ ଯାଇଛି । ସେଇଥି ପାଇଁ ଯାଇଛଂତି କଂଦରପୁର ।

ଅରିନ୍ଦମ — କଂଦରପୁରରେ କଣ ଅଛି ?

ଅରବିନ୍ଦ — ସେଇଠି ଦି'ଜଣ ଯୋଗୀନୀ ସାଧିକା ଅଛଂତି !

ଅରିନ୍ଦମ	ନନ୍‌ସେନ୍ସ! (ସେ ମଦ ବୋତଲରେ ଯାହା ଥିଲା ପିଇଦେଲେ)

ଅରବିନ୍ଦ	ବ୍ୟସ୍ତ ହୁଅନି – ସଂଧ୍ୟା ବେଳକୁ ଚାଲି ଆସିବେ ।

(ପୁଣି ଲେଖିବାକୁ ଆରମ୍ଭ କଲା)

(ଅରିନ୍ଦମ ଖାଲି ବୋତଲଟାକୁ ଚୌକୀ ତଳେ ରଖିଲା । ଚୌକୀ ତଳେ ଆଉ ଗୋଟେ ବୋତଲ ଥିଲା । ସେଇଟାରେ ଅଧା ମଦ ଥିଲା । ଦେଖିଲା, ପରୀକ୍ଷା କଲା)

ଅରିନ୍ଦମ	କଣ ଗୋଟେ ଲେଖୁଚୁ ସେଇଠି ? କଣ ଲେଖୁଚୁ ? (ଝୁଙ୍କି ପଡ଼ି ଦେଖିଲା) ଓ... ନାଟକଟେ ? ଛାଡ଼େ... ମୋ' ଚୌକୀ ଛାଡ଼େ ! ନାଟକଟା ଅଧା ହେଇ ପଡ଼ିଚି ।

ଅରବିନ୍ଦ	ପଢ଼ିଲି । ଇଆଡ୍ତୁ ସିଆଡ୍ତୁ କଣଗୁଡ଼େ ଲେଖା ହେଇଚି । ବାଜେ ନାଟକ । ଏମିତି କଣ ଲେଖିଥିଲ ?

ଅରିନ୍ଦମ	ଯାତ୍ରା ନାଟକ, ତାର ଥାକ, ଲେଖିବା ଷ୍ଟାଇଲ୍... ଅଲଗା । ବାରମ୍ବାର ଘଟଣା ଘଟିବ ସେ କାହାଣୀରେ । ଘଟଣା ଭିତରେ ଚରିତ୍ର ଯେମିତି ବ୍ୟବହାର କରିବ, ସେଥିରୁ ସ୍ପଷ୍ଟ ହବ ତାର କ୍ୟାରେକ୍‌ଟର... ତାର ସାଇକୋଲଜି ।

ଅରବିନ୍ଦ	ତମ ଯାତ୍ରା ନାଟକରେ କଣ ଖାଲି ଫିଲ୍ମକୁ କପି କରାଯାଏ ? ଆଉ କିଛି ନାହିଁ ? ଓରିଜିନାଲ୍ ଲେଖୁନ ?

ଅରିନ୍ଦମ	ଓରିଜିନାଲ୍ କଣ ? ତମେ ଯାହା ଲେଖିବ – କୋଉ ଗୋଟେ ଫିଲ୍ମରେ ନିଶ୍ଚୟ ଥିବ । ହିନ୍ଦୀରେ ନ ହେଲେ ବଂଗଳାରେ । ତେଲୁଗୁ ନହେଲେ ତାମିଲ୍‌ରେ ନିଶ୍ଚୟ ଥିବ ।

ଅରବିନ୍ଦ	କାଇଁକି ? ତମେ କିଛି ଗୋଟେ ନୂଆ ଲେଖୁନ ?

ଅରିନ୍ଦମ	ନୂଆ ? ନୂଆ ଲେଖିଲେ ଆମ ଲୋକେ ତାକୁ ଗ୍ରହଣ କରି ପାରୁନାହାନ୍ତି । ତେଣୁ ଆମକୁ ସେଇ ପୁରୁଣା କାହାଣୀକୁ ମୋଡ଼ିମାଡ଼ି, ଫର୍ମୁଲାରେ ହିଁ ପକେଇବାକୁ ପଡ଼ିବ ।

ଅରବିନ୍ଦ ତମେ କିଛି ଜାଣିନା ଭାଇ ! ଷ୍ଟୋରୀଟାକୁ ନୂଆ ଷ୍ଟାଇଲ୍‌ରେ ନ ଲେଖିଲେ ଲୋକେ ତମ ନାଟକ ଦେଖିବେ ନାହିଁ ।

ଅରିନ୍ଦମ ଦେଖିବେ, ଦେଖିବେ, ହଜାରେ ଥର ଦେଖିବେ । ତୁ ଯାତ୍ରା ପାର୍ଟି ବିଷୟରେ କଣ ଜାଣିଛୁ ?

ଅରବିନ୍ଦ କିଛି ଜାଣିବା ଦର୍କାର ନାଇଁ । ତମ ଷ୍ଟୋରୀରେ ଯୋଉ ସେଣ୍ଟିମେଣ୍ଟ ଦେଇଚ – ସେଗୁଡ଼ା ଆଉଟ୍ ଡେଟେଡ୍ । ଦେଖିଲି – ସେ ଗୁଡ଼ା ଚାଲିବ ନାଇଁ, ବଦଳେଇ ଦେଲି ।

ଅରିନ୍ଦମ (ରାଗିଯାଇ) ହାଉ ଡେୟାର୍ ୟୁ ? କାଲିର ଟୋକା... କଣ ଜାଣିଚୁ ? ପବ୍ଲିକ୍ ଆଡ଼ମିନିଷ୍ଟ୍ରେଶନ୍‌ରେ ଏମ୍.ଏ. । ତାପରେ ଗୁଡ଼େ ପ୍ରବଂଧ ବହି ଆଉ କି.କେ. ବହି ଘୋଷିଚୁ । ଏତେ ବୁଦ୍ଧି ହେଇଗଲା ? ଅରିନ୍ଦମ ମହାପାତ୍ରର ସ୍କ୍ରିପ୍ଟରେ ହାତ ମାରିବୁ ? (ପାଖକୁ ଯାଇ ଅରବିନ୍ଦର କପାଳ ଉପରେ ବିଶି ଆଂଗୁଠିରେ ଖୁବ୍ ଜୋର୍‌ରେ ଠେଲି ଦେଲେ) ଅଭଦ୍ର ! ମୋ' ଷ୍ଟୋରୀ କାହିଁକି ଚେଞ୍ଜ କଲୁ ? କାହିଁକି ?

ଅରବିନ୍ଦ କାହିଁକିନା ତମେ ଖାଲି ଗୁଡ଼େ ଘଟଣା ଘଟଉଚ – ଆଉ କିଛି କରୁନ ! ୟାଠୁ ଅନେକ ଭଲ ଥିଲା ସତରଶହ ମସିହାର "ମୋଗଲ ତାମ୍‌ସା !" (ଲେଖି ଚାଲିଲେ)

ଅରିନ୍ଦମ ମୁଁ ଆଉଥରେ ମୋଗଲ ତାମସା ଲେଖିବି ! ତୋର କଣ ଗଲା ? ତୁ ମୋ' ଷ୍ଟୋରୀକୁ କାଇଁକି ଚେଞ୍ଜ୍ କଲୁ ?

ଅରବିନ୍ଦ ହେଃ ! ! ଡୋଣ୍ଟ ଡିସ୍‌ଟର୍ବ ମି' !

ଅରିନ୍ଦମ (ରାଗି ପ୍ରାୟ ପାଗଳ ପରି) ମୁଁ ପଚାରୁଚି, କଣଟେ ତୁ' ନୂଆ କରି ପକେଇଲୁ ଏମିତି ?

ଅରବିନ୍ଦ ମୁଁ କହିବି ନାଇଁ ।

ଅରିନ୍ଦମ କାଇଁକି ?

| | |
|---|---|
| ଅରବିନ୍ଦ | ତମେ ବୁଝି ପାରିବ ନାହିଁ । ଚୁପ୍ ଚାପ୍ ବସ ଏଇଠି ! ପରେ ଶୁଣିବ । |
| ଅରିନ୍ଦମ | ବର୍ତ୍ତମାନ ତୁ' କହିବା ପାଇଁ ବାଧ । ବର୍ତ୍ତମାନ !! |
| ଅରବିନ୍ଦ | ନା, ମୁଁ କହିବି ନାଇଁ । |
| ଅରିନ୍ଦମ | ତୁ' କହିବା ପାଇଁ ବାଧ !! ବର୍ତ୍ତମାନ ! ସାଂଗେ ସାଂଗେ !! (ଗୋଡ଼କୁ ତଳେ କଚାଡ଼ି କଚାଡ଼ି) ବାଧ, ବାଧ, ବାଧ !! |
| ଅରବିନ୍ଦ | ତମେ ଜଣେ ଓ.ଏ.ଏସ୍ କ୍ଲାସ୍ ୱାନ୍ ଅଫିସର ସାଂଗରେ କଥା ହଉଚ ! ଗୋଡ଼କୁ କଚାଡ଼ି ଏମିତି କାହିଁକି ଡିଆଁ ଡେଇଁ କରୁଚ ? ଜାଣିଚ ? ଏଇଟା ରାଜଧାନୀ । ଏମିତି ପାଟିତୁଣ୍ଡ କରି ଡିଆଁ ଡେଇଁ କଲେ ଗୁଣ୍ଡା ଲାଗିଯିବେ ତମ ପଛରେ ! ଗୋଟେ କିଏ ଆସି ଗୁଳିକରିଦବ ! |
| ଅରିନ୍ଦମ | ଏଁ ? ଗୁଳି କରିଦେବେ ? ଏଇଟା ତମର ରାଜଧାନୀ ନା ଗୋଟେ ଜଂଗଲ ବେ ? ଏଗୁଡ଼ା ମଣିଷ ନା ଆଦିମ ଅଧିବାସୀ ? |
| ଅରବିନ୍ଦ | ପ୍ରଥମେ କୁହ – ତମେ ଗୋଟେ ନାଟ୍ୟକାର ନା ବନ୍ୟ ଜନ୍ତୁ ? |
| ଅରିନ୍ଦମ | ହଁ, ମୁଁ ଗୋଟେ ବନ୍ୟଜନ୍ତୁ ? ଆଉ ମୁଁ ତୋ' ଘରେ ଆଛି, କଣ କରିବୁ ? |
| ଅରବିନ୍ଦ | ଆମ ସଭ୍ୟତାର କାମ ହଉଚି ଜଂଗଲ ସଫା କରିବା । ହିଂସ୍ର ଆଦିବାସୀମାନଙ୍କୁ ସଂସ୍କାର କରିବା । ଆମର ଗୋଟେ ଟ୍ରାଇବାଲ୍ ଡେଭ୍‌ଲପ୍‌ମେଣ୍ଟ୍ ଡିପାର୍ଟମେଣ୍ଟ୍ ଅଛି । ସବୁଠୁ ଭଲ ହବ, ତମେ ଟିକିଏ ସଭ୍ୟ ହେଇଯାଅ – |
| ଅରିନ୍ଦମ | ଆଚ୍ଛା ? ତା'ମାନେ ତୁ' ସଭ୍ୟ ଦେଖେଇ ହଉଚୁ ମୋ' ଆଗରେ ? |
| ଅରବିନ୍ଦ | ଆଉ କଣ ଦେଖେଇବି ? ମୁଁ ସଭ୍ୟ ଲୋକଙ୍କୁ ସମ୍ମାନ କରେ, |

ଆଦର କରେ ।

ଅରିନ୍ଦମ ହେଲ୍ ୱିଥ୍ ୟୁ! ତୋର ସଭ୍ୟତାଟା ଗୋଟେ ମୁଖା । ଗୋଟେ ପ୍ରତାରଣା । ଗୋଟେ ଅଭିନୟ... ଗୋଟେ ଠକାମି... ସଭ୍ୟତା ଗୋଟେ... ଗୋଟେ... ଗୋଟେ... repression... ଆଉ ତୁ ନିଜେ... ନିଜେ ଗୋଟେ ଛଦ୍ମବେଶ! ଷ୍ଟୁପିଡ୍! (ଅରବିନ୍ଦକୁ ଗୋଟେ ଧକ୍କା ଦେଲେ । ତା'ପରେ ଯାଇ କ୍ୱାଟ ବୋତଲରୁ ମଦ ପିଇଲେ, ସେଇ ସମୟରେ...)

ଅରବିନ୍ଦ ତମେ ଛଦ୍ମତାର ମୁଖା ପିନ୍ଧିବାକୁ ବାଧ ଭାଇ! ଆମେ ଏମିତି ଗୋଟେ ସମୟରେ ବଂଚିଛେ – ଯୋଉଠି ସତ କହିବା ଅପରାଧ । ହସିବା ଗୋଟେ ଶସ୍ତା ଲୋକର କାମ! ତେଣୁ ତମେ ମୁଖା ପିନ୍ଧିବାକୁ ବାଧ! ମିଠା କଥା କହି ଫିଲସଫର୍ ଆକ୍‌ଟିଙ୍ଗ୍ କରିବାକୁ ବାଧ । ଗମ୍ଭୀର, ଫିଲସଫର୍ ଆକ୍‌ଟିଙ୍ଗ୍!!

ଅରିନ୍ଦମ No, ମୁଁ ବାଧ ନୁହେ । ଏଇଟା ମୋ' ଷ୍ଟୋରୀରେ ନାହିଁ ।

ଅରବିନ୍ଦ ଅଛି । ମୁଁ ତମ ଷ୍ଟୋରୀ ବଦଳେଇ ଦେଇଚି । ଏଇଟା ମୋ' ଷ୍ଟୋରୀ । ତମ ଭଳିଆ ଗୋଟେ ବଣୁଆ ଲୋକର ପାଗଳାମୀ ନୁହେ । ଦିସ୍ ଇଜ୍ ମାଇଁ ଷ୍ଟୋରୀ!

ଅରିନ୍ଦମ୍ କଣ ଗୋଟେ "ମାଇଁ ଷ୍ଟୋରୀ - ମାଇଁ ଷ୍ଟୋରୀ" ହଉଚୁ ଏଇଠି? ଏଡ଼େ ସିନିଅରଟା ତୁ? କୋଉ ଷ୍ଟୋରୀ ଲେଖିଚୁ? ଏଁ? ଆତ୍ମହତ୍ୟା କରୁଥିବା ଚାଷୀର କଥା? ଦାଦନ କୁଲିକୁ ଏଡସ୍ ହେଇଯିବା କଥା? ନା ବି.ପି.ଏଲ୍ ଚାଉଳ କଥା? କୋଉ ଷ୍ଟୋରୀ ଲେଖିଚୁ? ଏଗୁଡ଼ା ନାଟକ ନା ଖବରକାଗଜ? ଏଁ? ଖବର କାଗଜ ମାର୍କା ବାସ୍ତବ ବାଦ? ଏଗୁଡ଼ା ମୁଁ ଚିରିବି । (ସ୍କ୍ରିପଟ୍ ଛଡ଼େଇ ଚିରିଦେଲା) ।

ଅରବିନ୍ଦ ହଁ, ଏଗୁଡ଼ା ଖଟିଖିଆ ମଣିଷର କଥା, ସାଧାରଣ ଲୋକର

କଥା। ମାନବ ବାଦର କଥା! ତମେ କଣ ବୁଝିବ? ତମେ ତ ମଣିଷ ଭିତରେ ଲୁଚି ରହିଥିବା ଆଦିମ ମଣିଷ! କେବଳ ଗୋଟେ Wild instinct... ଗୋଟେ ବିଡ଼ା impulse। ମାନବବାଦର କଥା କେମିତି ବୁଝିବ? କାହିଁକି ଚିରୁଚ ମୋ' ଲେଖା? କାହିଁକି ଚିରିଲ?

ଅରିନ୍ଦମ — ଗୁଳି ମାର ତମ "ମାନବ ବାଦ"କୁ। ହାଇକୋର୍ଟକୁ ହାର୍‌କିନ୍ ଦେଖଉଛୁ? ଶଳା ମାନବବାଦ! କୁମ୍ଭୀର କାନ୍ଦଣା!! ଯା – ରବୀନ୍ଦ୍ର ମଣ୍ଡପରେ ସେ ଡାଇଲଗ୍ କହିବୁ ଆଉ ଭୁବନେଶ୍ୱରର ଇଣ୍ଟେଲେକ୍‌ଚୁଆଲ୍ ମାନେ କିଣିବେ, ଯା' - ଯା' ଏଇଠୁ (ଖୁବ୍ ଜୋର୍‌ରେ ଧକ୍କା ଦେଲେ ଓ ସାନଭାଇ ଅରବିନ୍ଦ ତଳେ ପଡ଼ିଗଲା। ଅରିନ୍ଦମ ଯାଇ କ୍ୱାଟ ବୋତଲରୁ ମଦ ପିଇଲେ। ଅପ୍‌ଷ୍ଟେଜ୍‌ରେ। ଡାଉନ୍‌ରେ ଅରବିନ୍ଦ)

ଅରବିନ୍ଦ — (ସେମିତି ତଳେ ପଡ଼ିଥିବା ଅବସ୍ଥାରେ ବିପ୍ଳବ କଲା)। ଏୟ୍! ଭାଇ! ତମକୁ ମୁଁ ସିନିୟର୍ ବୋଲି ରେସ୍‌ପେକ୍ଟ୍ କରେ। ରେସ୍‌ପେକ୍ଟ - କରେ କାରଣ ତମେ ମଧ ମୋ' ଭିତରର ଲୋକ। ମୋ' ଆତ୍ମାର ପାଖ ଲୋକ... ତା' ବୋଲି ମୋ' ନାଟକଟାକୁ ତମେ ଚିରିବ? ଏଡ଼େ ସାହସ ତମର?

ଅରିନ୍ଦମ — (ମଦ ପିଇବା ଟିକିଏ ବଂଦ କରି ଅରବିନ୍ଦକୁ ଚାହିଁଲେ। ରାଗିଯାଇ ଅଣ୍ଟାରୁ ବେଲ୍‌ଟ୍ ବାହାର କଲେ। ସେଇଟା ଗୋଟେ ସରୁ ପ୍ଲାଷ୍ଟିକ୍ ବେଲ୍‌ଟ। ସେଇଟାକୁ ବୁଲେଇ ବୁଲେଇ ଆସି ଅରବିନ୍ଦର ପଛପଟେ ଠିଆହେଲେ। ଅରବିନ୍ଦ ରାଗିଯାଇ କହୁଥିଲା - ଚିତ୍କାର କଲାଭଳି।)

ଅରବିନ୍ଦ — ତା' ବୋଲି ମତେ ତମେ ବାଡ଼େଇବ? ସୀମା ଟପି ଯାଉଚ ତମେ!

ଅରିନ୍ଦମ — (ପଛପଟେ ଠିଆ ହୋଇ) ସଟ୍ ଅପ୍!

ଅରବିନ୍ଦ — ପାଟିତୁଣ୍ଡ କଲେ ଉଠିବି... ଖୋବିବି ତମକୁ!

ଅରିନ୍ଦମ — ହେଃ ! (ବେଲ୍‌ଟାକୁ ଦୁଇହାତରେ ଧରି ରୋଲ୍ କଲା)

ଅରବିନ୍ଦ — (ଖୁବ୍ ଜୋର୍‌ରେ ଚିତ୍କାର କରି) ତଣ୍ଟିଚିପି ଦେବି ! ସାବଧାନ୍ !

(ଅରବିନ୍ଦ ଡାଉନ୍ ଷ୍ଟେଜ୍‌ରେ ସାମ୍ନାକୁ ଚାହିଁ ଏଇ ସଂଳାପ କହିଲାବେଳେ ଧଡାସ୍ କରି ବେଲ୍‌ଟ୍‌ଟାକୁ ତା' ବେକରେ ପକେଇ ନେଇ ଗୁଡ଼େଇ ଗୁଡ଼େଇ ଚାପି ଦେଉ ଦେଉ ସଂଳାପ କହିବ)

ଅରିନ୍ଦମ — ତୁ' ମୋର ତଣ୍ଟି ଚିପିବୁ ? ଚିପିଲୁ ? ଚିପିଲୁ ଦେଖି !! (ବେଲ୍‌ଟା ଅରବିଂଦ ବେକରେ ଏତେ ଜୋର୍‌ରେ ଚିପିଲା ଯେ ଅରବିଂଦ ଗଁ ଗଁ ହେଲା । ମୁହଁରେ ସ୍ୱେଦ ବିଂଦୁ ଦେଖାଗଲା । ଭୟଂକର ଦିଶିଲା । ପୁରାଦମ୍ ଲଗାଇ ବେଲ୍‌ଟଟାକୁ ଛଡ଼େଇ ଆଣିଲା ଓ ଉଠିଲା ହିଂସ୍ର ଭାବରେ । ଆଗେଇଗଲା ଅରିନ୍ଦମ ଆଡ଼କୁ...)

ଅରବିନ୍ଦ — କଣ କରୁଥିଲ ମୋର ବେକକୁ ? କିଏ ତମେ ? ମଣିଷ ନା ପାଲଟା ବାଘ ?

ଅରିନ୍ଦମ — ହଁ, ମୁଁ ତମକୁ ମଡ଼ର୍ କରୁଥିଲି ! ଆଜି ମଡ଼ର କରିବି ! କାହିଁକି ଚିରିଲ ମୋର ନାଟକ !

ଅରିନ୍ଦମ — ତୁ ଗୋଟାଏ କବି । ଶବ୍ଦମାନଂକର ଫେରିବାଲା । ଖାଲି ଗୁଡ଼ାଏ ଶବ୍ଦ ଡାଉନ୍‌ଲୋଡ୍ କରୁଛୁ ସମାଜ ଉପରେ । ସମାଜକୁ କ୍ଷତାକ୍ତ କରିବାର ଅଜବ କୌଶଳ ଶିଖିଚୁ । କିଂତୁ ମଣିଷକୁ ଚିହ୍ନିବାର ଆଖିଟେ ତୋର ଏ ଯାଏଁ ଗଜୁରିଲା ନାଇଁ । ତୁ' ତା'ହେଲେ ସରିଆସୁଥିବା ମଣିଷ ପଣିଆର ଗୋଟେ ଦଦରା ଅବଶିଷ୍ଟାଂଶ ।

ଅରବିନ୍ଦ — ଆଉ ତମେ ଆମ ସଭ୍ୟତା ଭିତରେ ଆତ୍ମଗୋପନ କରିଥିବା ଗୋଟେ ହିଂସ୍ର ପଶୁ । ଗୋଟେ ଜଂଗଲ । ପାର୍କ ହବା ପାଇଁ ଚେଷ୍ଟା କଲେବି ପାରିବନାଇଁ !

ଅରିନ୍ଦମ — ତୁ' ନିଜେ ଗୋଟେ ଅଳିଆଗଦା, ସଭ୍ୟତାର ଆବର୍ଜନା ।

ଆମମାନଂକୁ କ୍ଷତାକ୍ତ କରିବାର କୌଶଳ ଶିଖିଚୁ! ଆମକୁ ବଣ ମଣିଷ କହି ନିଜେ ଗୋଟେ ଜଂଗଲ ତିଆରି କରୁଚୁ!

ଅରବିନ୍ଦ ନା, ତିଆରି କଲେ ଆମେ ଉଦ୍ୟାନ ତିଆରି କରିବୁ। ଜଂଗଲ ନୁହେ ପାର୍କ ତିଆରି କରିବୁ – ଜଂଗଲ ନୁହେ...। ମୁଁ ଆଜି ତମର ସେ ବନ୍ୟତାକୁ ମାରିବି।

ଅରିନ୍ଦମ ଏୟ! ବାଘ ସଂଗରେ ଖେଳୁଚୁ! ବାଘ ସାଂଗରେ ଲଢ଼ିବାକୁ ଆସିଚୁ! ଜାଣିବୁ ତୋର କଣ ହବ!

ଅରବିନ୍ଦ ତମର ସବୁ ପଶୁତ୍ୱକୁ ମୁଁ ଆଜି ବଳି ଦେବି ଅରିନ୍ଦମ! (ବେକରେ ବେଲ୍‌ଟ ପକାଇ ଗୁଡ଼େଇ ଦେଲା) ବର୍ତ୍ତମାନ କଣ କରିବ? ତମ ଭଳି ଗୋଟେ ଚିତାବାଘର ବେକରେ ପକେଇ ଦେଇଛି ଲଗାମ! ଆଜି ଆଉ ଛାଡ଼ିବି ନାଇଁ! ଗଲ ଦେଖି!

(ଧସ୍ତା ଧସ୍ତି ଏବଂ ଅରବିନ୍ଦ ଏତେ ଜୋର୍‌ରେ ଭିଡ଼ିଲା ଯେ ଶ୍ୱାସରୁଦ୍ଧ ହେଇ ପଡ଼ିଗଲା ଅରିଂଦମ, ତଥାପି ଭିଡ଼ିଲା ଅରବିଂଦ। ଅରିନ୍ଦମ୍ ଗୋଡ଼ ହାତ ଛାଟିଲା ଓ ମରିଗଲା–। ବେକ ଢଳି ପଡ଼ିଲା। ଆଲୋକ ଓ ଆବହ ସଂଗୀତ ଗଂଭୀର ହେଲା। କୋରାଲ୍ ହମିଂ ନିଅନ୍ତୁ।)

ଅରବିଂଦ (ପରୀକ୍ଷାକରି ଦେଖିଲା ଅରିଂଦମ ମରି ଯାଇଛି, ସେ ଆସ୍ତେ ଆସ୍ତେ ନିମ୍ନ ମଂଚ ଆଡ଼କୁ ଆସିଲା। ମୁହଁରୁ ଝାଳ ପୋଛିଲା। ନିଜକୁ ସଂଭାଳି ନେଲା। ବୋତଲରେ ବଳକାଥିବା ମଦ ପିଇଲା। ଆବହ ସଂଗୀତରେ ପରିବର୍ତ୍ତନ) ସଭ୍ୟତା ଯେତେ କୃତ୍ରିମ ହେଉ ପଛେ ମଣିଷକୁ ନିର୍ଭୟରେ ବଂଚିବାର ସୁଯୋଗ ତିଆରି କରେ। ଏ ସମାଜରେ ସଜ୍ଜନମାନେ ଆତଂକର ଶିକାର ହେବା ଅନୁଚିତ ସୁଧୀବୃଂଦ! ଆମ ଜାତିର ପ୍ରାରମ୍ଭରେ ଥିବା ସବୁ ଈର୍ଷା, ସବୁ ବର୍ବରତା, ସବୁ ଆଦିମତାର ତଣ୍ଟିଚିପି ମାରି ଦିଆଯିବା ଉଚିତ।

(ଫେରିଲେ ଅରିନ୍ଦମ ପାଖକୁ । ନଇଁଲେ, ଦେହଟାକୁ ହଲେଇ ଦେଲେ । ଅରିନ୍ଦମଙ୍କ ମୃତ୍ୟୁ ସ୍ପଷ୍ଟ ହେଲା । ଆଲୋକ କେନ୍ଦ୍ରିଭୂତ ହେଲା ସେ ଦୁହିଁଙ୍କ ଉପରେ ।

ଆବହ ସଂଗୀତ ଉଚ୍ଚତର ହେଲା ଆଲୋକ ସ୍ତିମିତ ହେଲା ଓ ଆଉ ଏକ ସ୍ୱତଂତ୍ର ସ୍ପଟ୍ ପଡ଼ିଲା ମରି ପଡ଼ିଥିବା ଅରିନ୍ଦମଙ୍କ ଉପରେ । ତାରି ଭିତରେ ପ୍ରବେଶ କଲେ ସୁହାସିନୀ । ହାତରେ ପୂଜା ଥାଳୀ, ଥାଳୀରେ ବିଭିନ୍ନ ପୂଜା ଓ ନୈବେଦ୍ୟ ସାମଗ୍ରୀ, ଗୋଟେ ଜଳୁଥିବା ଦୀପ, ଗୋଟେ ଘଣ୍ଟି । ସେ ହଠାତ୍ ତଳେ ପଡ଼ିଥିବା ଅରିନ୍ଦମଙ୍କ ଶବକୁ ଦେଖି ଚମକିବା ପାଇଁ ଆବଶ୍ୟକ ଆବହ ସଂଗୀତ ।

ଅଟକିଗଲେ ସୁହାସିନୀ, ନଇଁ ପଡ଼ି ଆଣ୍ଠୁମାଡ଼ି ବସିଲେ । ଥାଳୀଟା ଦୁଇହାତରେ ଧରି ଆରତି କଲାଭଳି ଅଭିନୟ କରୁକରୁ ହୁଳହୁଳି ପକାଇଲେ । ଅରିନ୍ଦମ ଉଠିଲେ ନାଇଁ । ସବୁ ସ୍ତବ୍ଧ ।)

**ସୁହାସିନୀ** ଏ ! ଉଠ ! କୁଆଡ଼େ ପଳେଇ ଗଲ ? ମାଟିରେ ପୋତି ରଖୁନା ଗୋଡ଼ଟାକୁ ? ଟିକିଏ ଟିକିଏ ବାତ୍ୟାରେ ଉଡ଼ି ପଳଉଚ କ'ଣ ? ଏୟ ! (ହଲେଇଲେ । ଘଣ୍ଟିଟା ଟିଙ୍ଗ୍ ଟିଙ୍ଗ୍ କଲେ, କିଛି ପ୍ରତିକ୍ରିୟା ମିଳିଲା ନାହିଁ ।)

(ଟାଣ ସ୍ୱରରେ ଦରଓ୍ୱାନ୍‌କୁ !)

ଦରଓ୍ୱାନ୍ ! ! ଇଏ କୁଆଡ଼େ ଗଲେ ? ଥାଳୀଟା ତଳେ ରଖି ଠିଆ ହେଇଗଲେ)

**ଦରଓ୍ୱାନ** (ଖୁମ୍ବ ଭଳି ଠିଆ ହେଇଗଲା । ଫ୍ରିଜ୍ ! ପାଟିକଲେ ସୁହାସିନୀ)

**ସୁହାସିନୀ** ଏୟ ! ଖମ୍ବଟେ ଭଳି ଠିଆ ହେଇଚୁ କ'ଣ ? ପଚାରୁଚି ପରା ଇଏ କୁଆଡ଼େ ଗଲେ !

(ଦରଓ୍ୱାନ୍ ଖୁବ୍ ଛୋଟ ଛୋଟ ପଦକ୍ଷେପରେ ମାର୍ଚ୍ଚିଂ କଲା

ପରି ଗଲା ଓ ମୃତ ଦେହକୁ ସାଲ୍ୟୁଟ୍ ମାରିଲା । ଆବହ ସଂଗୀତ ସେହିପରି ହେବ । ମାର୍ଚ୍ଚିଂ ବ୍ୟାଣ୍ଡ ବଂଦ ହେଲା । ଦରଓ୍ୱାନ୍ ଆସ୍ତେ ନଇଁଲା ଓ ନାଟ୍ୟକାରଙ୍କୁ ବିଭିନ୍ନ ସ୍ଥାନରେ ଛୁଇଁଲା । ତାପରେ ଉଠି ଠିଆ ହେଲା ।)

ସୁହାସିନୀ — କହିବ ନା ପୋଲିସ୍‌ରେ ଖବର ଦେବି ? ଗୁଇନ୍ଦା ବିଭାଗରେ ଖବର ଦେବି ? ମୁଁ ଯାଉଛି ପ୍ରଥମେ ପୋଲିସ୍ ଥାନାକୁ (ଚାଲିଗଲେ)

ମଂଚର ଆଲୋକ ସ୍ତିମିତ ହେଲା ଓ ଆଉ ଏକ ସ୍ୱତଂତ୍ର ସ୍ପଟ୍ ପଡ଼ିଲା ମରି ପଡ଼ିଥିବା ଅରିନ୍ଦମଙ୍କ ଉପରେ ।

ଦରୁଆନ୍ — (ଖୁବ୍ ଜୋର୍‌ରେ ହସୁଥିଲା)

(ଏହି ପ୍ରକ୍ରିୟାଟିର ପୁନରାବୃତ୍ତି ଘଟିବ ଏକ ମିନିଟ ପର୍ଯ୍ୟନ୍ତ । ତାରି ଉପରେ ଚଢ଼ିବ କୋରାଲ୍ ହମିଂ ଓ ଆଲୋକ ସ୍ତିମିତ ହୋଇ ଆସିବ । ପଛପଟେ ଟି.ଭି.ଟା ଚାଲିଲା । ମଂଚ ପୁରା ଅଂଧାର ହେଲା ବେଳକୁ ଟିଭି ପରଦାରେ ଦିଶିଲା ପୋଲିସ୍ ଭୂମିକାରେ ଅଭିନୟ କରୁଥିବା ସେଇ ପତଳା ଲୋକଟି – ଯାର ନାଁ ଆମେ ଜାଣିନାହୁଁ ବୋଲି "ପତ୍‌ଲୁ" ବୋଲି ଡାକୁଚୁ । (ସେ "ପତ୍‌ଲୁ" ନାମକ ପୋଲିସ୍‌ଟା କିଛି ସମୟ ଟି.ଭି. ପରଦାରେ ଠିଆ ହେଲା । ମଂଚ ଉପରେ ଘଟୁଥିବା ହସ ଓ କାଂଦର ଫ୍ୟୁଜନ୍‌ରେ ତିଆରି ସ୍ୱତଂତ୍ର ଦୃଶ୍ୟଟିକୁ ଦେଖୁଥିଲା । ସେ ଟି.ଭି.ର ପରଦା ଫାଡ଼ି ମଂଚ ଉପରକୁ ଚାଲି ଆସିଲା । ମଂଚରେ ଠିଆ ହେଇ ହସୁଥିବା ମୋଟା ଦରଓ୍ୱାନ୍‌କୁ ଦେଖିଲା ।)

ପତ୍‌ଲୁ — ଆବେ ହେ ! ତୁ' ଏଇଠି କେତେବେଳୁ ଅଛୁ ?

(ପତ୍‌ଲୁ ଆସି ଦେଖାଦେଲା ଟି.ଭି. ଆଗରେ, ସେ ଗୋଟେ ହ୍ୟାଟ୍ ପିନ୍ଧିଛି ଓ ଗୁଇନ୍ଦା ଭୂମିକାରେ ଅଭିନୟ କରୁଛି । ସେଇଠୁ ଠିଆହେଇ ଡାକିଲା)

ପତ୍‌ଲୁ — ମୋଟୁ ଭାଇ! ତୁ' ଏଇଠି କଣ କରୁଛୁ?

ଦରୱାନ — ମୁଁ ଏଇଠି ଦରୱାନ୍ ଅଛି।

ପତ୍‌ଲୁ — ଖାଉଛୁ କୋଉଠି?

ଦରୱାନ — ଏଇଠି! ଘରେ। ଆ' ଟିଭି ଭିତରୁ ଡେଇଁପଡ଼ି ଘର ଭିତରକୁ ଚାଲିଆ। ଏକାଠି ଖାଇବା! ସେ ଟି.ଭି.ଟା ଭିତରେ କ'ଣ କରୁଚୁ?

ପତ୍‌ଲୁ — ସିରିଏଲ୍‌ରେ ରୋଲ୍ କରୁଚି। ଗୁଇନ୍ଦା, ମିଷ୍ଟର ଧୂର୍ଜଟୀ ସାମନ୍ତରାୟ!

ଦରୱାନ — ତୁ ଶଳା ଯା' ଭିତରେ ଷ୍ଟାର୍ ହେଇଗଲୁଣି! ଏଇ ଖୁସିରେ ଚାଲିଆ – ଏକାଠି ଖାଇବା, ଆମର ଏଇଠି ଗୋଟେ ମଡର କେଶ୍ ହେଇଚି।

ପତ୍‌ଲୁ — ମଡର କେଶ୍? ଘର ଭିତରେ ମଡର?

ଦରୱାନ — ଅନୁସଂଧାନ ଚାଲିଚି – ଆ' ଚାଲିଆ' ଭିତରକୁ? ଡେଇଁପଡ଼େ ଟିଭି ଭିତରୁ! ଡେଇଁ କି ଚାଲି ଆ' –

(ଆସ୍ତେ ଆସ୍ତେ ଆସିଲା ଭିତରକୁ)

ଏଇ ଦେଖ! ଏଇ ବାବୁ ନାଟ୍ୟକାର। ମାଲିକାଣୀ କହୁଛନ୍ତି ଇଏ ମରିଗଲେ। ମୁଁ କହୁଚି ଶୋଇଛଂତି। ନା କଣ କହୁଚୁ?

ପତ୍‌ଲୁ — ରହିଯା' – ରହିଯା ସାଂଗ! ଟିକିଏ ରହିଯା'–! (ପକେଟ୍‌ରୁ ମାପିବା ଫିତା ବାହାର କରି ଶୋଇଥିବା ନାଟ୍ୟକାରର ଦୈର୍ଘ୍ୟ ପ୍ରସ୍ଥ ମାପୁ ମାପୁ) ଏ ବାବୁ କିଏ? କଣ କରୁଥିଲେ?

ଦରୱାନ — ବାବୁ ଗୋଟେ ନାଟ୍ୟକାର। ଯାଙ୍କ ମୁଣ୍ଡ ଭିତରକୁ ବିଭିନ୍ନ ଆଡୁ ବିଭିନ୍ନ ଆଇଡ଼ିଆ ଆସେ।

ପତ୍‌ଲୁ — ବିଭିନ୍ନ କ୍ୟାରେକ୍ଟର ମଧ୍ୟ ଆସନ୍ତି। ବିଭିନ୍ନ ଘଟଣା ଆସନ୍ତି।

ଦରୱାନ ସେଇଥିପାଇଁ ତାଂକ ମୁଣ୍ଡଭିତରେ ଟ୍ରାଫିକ୍ ଜାମ୍ ହେଇଯାଏ ।

ପଟ୍ଲୁ ହଉ । ତୁ' କଣ କରୁଛୁ ?

ଦରୱାନ ମୁଣ୍ଡ ଭିତରକୁ ଯୋଉ ଅଦରକାରୀ ଆଇଡ଼ିଆ ଆସୁଚି – ସେ ଗୁଡ଼ାକୁ ୱାନ୍ ୱେ ଟ୍ରାଫିକ୍ କରିବାକୁ ପଡ଼ିବ ।

ପଟ୍ଲୁ ବାଃ ! ମାନିବାକୁ ପଡ଼ିବ । ତୋ' ମୁଣ୍ଡରେ ମୋଟୁ ଭାଇ ! ବଢ଼ିଆ ଆଇଡ଼ିଆ ଆସୁଚି । କାଇଁ ତୋ ମୁଣ୍ଡଟା ଦେଖି !

(ଫିତାରେ ଦରୱାନ୍‌ର ମୁଣ୍ଡକୁ ମାପିଲା । ତାରି ଭିତରେ ପୁଣିଥରେ ହୁଇସିଲ୍ ବାଜିଲା ଓ ଦୌଡ଼ି ଦୌଡ଼ି ଭିତରକୁ ପଶିଲା ଡ଼ୋନା...)

ଡୋନା ଭିତର ପଟୁ ଛାଡ଼ିଲା ନାଇଁ! ବାହାର ପଟୁ ଦୌଡ଼ିକି ଆସିଲି ମିଛୁଟାରେ, କାହାନ୍ତି ସାର୍ ? ସାର୍ !

(ଏଇ ହ୍ୱିସିଲ୍ ଶବ୍ଦ ଶୁଣି ଧଇଁସଇଁ ହେଇ ଦୌଡ଼ି ଆସିଲା ଡୋନା ସାମଲ) ଭିତର ପଟେ ଛାଡ଼ିଲା ନାଇଁ... ଅଗତ୍ୟା ବାହାରପଟୁ ଆସିବାକୁ ପଡ଼ିଲା । (ହଠାତ୍ ସାରଙ୍କୁ ଦେଖି)

ଡୋନା ସାର୍... ସାର୍... ସାର୍ !

ଦରୱାନ (ହ୍ୱିସିଲ୍ ମାରିଲା) ଷ୍ଟପ୍ ! ସେଇଠି ରୁହ । କିଏ ତମେ ?

ଡୋନା କିଏ ତମେ ! ! ସାର୍ଙ୍କ ନୂଆ ନାଟକର ରିହାରସାଲ୍ ଚାଲିଛି । କ୍ଲାଇମାକ୍ସଟା ସରିନି... ସାର୍ ହଠାତ୍ ଅଦୃଶ୍ୟ ? କଥା କ'ଣ ! ସାର୍ କାହାନ୍ତି ?

ସୁହାସିନୀ ସାର୍ ଆଉ ନାହାନ୍ତିଲୋ ଡୋନା... ସାର୍... (କାଂଦୁଥିଲେ) ସାର୍ ସବୁଦିନ ପାଇଁ ଅଦୃଶ୍ୟ ହେଇଗଲେ । (କାଂଦିଲେ)

ଡୋନା ପର୍ମାନେଣ୍ଟ୍‌ଲୀ ଅଦୃଶ୍ୟ ? ନାଟକଟା ସରିବ କେମିତି ? ଆରେ... ଆରେ... ଆପଣ କାଂଦୁଚଂତି କାଇଁକି ମାଉସୀ... ? (ପାଖକୁ ଆସି ଲୁହ ପୋଛିଦେଲା)

ଦରଓ୍ୱାନ ସାର୍ "ଆତ୍ମା" ହେଇଗଲେ ! ଖାଲି ଶରୀରଟା ଏଇଠି ପଡ଼ିଛି !

(ଆବହ ସଂଗୀତ, ସବୁ ଚରିତ୍ର ଦୂରେଇ ଗଲେ । ଡୋନା ଆବହ ସଂଗୀତର କୋରାଲ ହମିଂରେ ଶୋଇଥିବା ନାଟ୍ୟକାର ପାଖକୁ ଗଲା । ତାଂକୁ ପରୀକ୍ଷା କଲେ ଡୋନା)

ପତ୍‌ଲୁ ମୋଟୁ ଭାଇ ! ଦରଓ୍ୱାନ ! ନାଟ୍ୟକାର ବାବୁ ମଲେ କି ନାଇଁ ଆମକୁ ଇନ୍‌ଭେଷ୍ଟିଗେସନ୍ କରିବାକୁ ପଡ଼ିବ ।

ଦରଓ୍ୱାନ (ପକେଟରୁ ଗୋଟାଏ ଲମ୍ୱେଇ ମାପିବାର ଫିତା (ଟେଲର୍‌ମାନେ ବ୍ୟବହାର କରୁଥିବା) ଆଣି ଦୁହେଁ ମାପିଲେ) ଧର... ଏ ବାବୁଙ୍କର ଉଚ୍ଚତା କେତେ, ଓସାର କେତେ...?

ପତ୍‌ଲୁ ଏ ଗୁଡ଼ା ମାପିଲେ କଣ ଜଣା ପଡ଼ିବ ?

ଦରଓ୍ୱାନ ତାଂକର କଳ୍ପନାର ଉଚ୍ଚତା କେତେ ଆଉ ଗଭୀରତା କେତେ...?

ପତ୍‌ଲୁ ହୁଃ ! କଳ୍ପନାର ଉଚ୍ଚତା ? ସେଗୁଡ଼ା କଣ ହବ ?

ଡୋନା ସାର୍‌ଙ୍କ କଳ୍ପନା ତ କାହିଁ କେତେବାଟ ଚାଲିଯାଏ... ଏଇ ସେଇ ଆକାଶ ଯାଏଁ... ମେଘ ଯାଏଁ ଭାସିଯାଏ ତାଂକର କଳ୍ପନା...! ସିଏ କଣ ଖବର କାଗଜ ବାଲା ଯେ ଖାଲି ଘଟଣାର ଫଟୋ ଉଠେଇବେ ? (ପାଖକୁ ଯାଇ) ପୋଲିସ ଭାଇମାନେ ମୋ' କଥାବୁଝୁଛଂତି ତ ? ମାଉସୀଙ୍କୁ ପଚାରୁ ନାହାନ୍ତି ?

ସୁହାସିନୀ କୁହନି – କୁହନି... ଲେଖୁଥିବେ, ଲେଖୁଥିବେ... ହଠାତ୍ କଣ ହେଇଯିବ ଯେ ଉଡ଼ି ପଳେଇବେ...! ଏ ମା' ! କୁଆଡ଼େ ଯେ ଯାଆନ୍ତି... ପତ୍ତା ମିଳେନି... ପୁରା ଅଦୃଶ୍ୟ ହେଇଯାଆନ୍ତି ।

ପତ୍‌ଲୁ ଆଚ୍ଛା ମ୍ୟାଡ଼ାମ୍ ? ଇଏ ବାବୁ ତାଂକ ଜୀବନରେ କେତେଥର ଏମିତି ଅଦୃଶ୍ୟ ହେଇଛନ୍ତି ?

ସୁହାସିନୀ ଜୀବନ ସାରା...! ଜୀବନ ସାରା!! ଥରେ ବର୍ଷା ହେଉଥିଲା – ଛତା ନେଇକି ଯାଇଥିଲେ। ଛତାଟା କୋଉଠି ଛାଡ଼ିଦେଇ ଆସିଲେ ଆଉ ନିଜେ କବାଟ ସଂଧିରେ, ଯେଉଠି ଛତାଟା ଥାଏ ସେଇଠି ଠିଆ ହେଇଗଲେ। (ହସିଲେ)

ଡୋନା କିଛି ହେଇନି... କିଛି ହେଇନି। ସାର୍ ଜମାରୁ ଫିଲସଫର୍ କି ପାଗଳା ଲୋକ ନୁହନ୍ତି। ହିସାବ କରି ସୀନ୍ ଲେଖନ୍ତି !!

ଦରୁଆନ ଆପଣମାନଂକ ଭଳିଆ ହିରୋଇନ୍‌ମାନେ ହିଁ ତାଂକୁ ପାଗଳା କରିଦେଇଛଂତି। ସେ ଦିନ ରାତିରେ ତାଂକୁ କିଡ୍‌ନାପ୍ କରି ଶିମିଳିପାଳ ନେଇକି କୁଆଡ଼େ ପଳେଇଗଲ? ହଇଓ ମାଡାମ୍? ଆଚ୍ଛା ମାଡାମ୍! ଆପଣମାନେ ସମସ୍ତେ ଯାଆନ୍ତୁ... ଏଇଟା ଯଦି ମଡର କେଶ୍ ହେଇଯିବ... ମତେ ହିଁ ପୋଲିସ୍ ଆସି ଜେରା କରିବ!

ପଟ୍‌ଲୁ ଆବେ ଭକ୍‌ଲୁ ପାର୍ଟି! ମୁଁ ନିଜେ ପରା ଆସିଚି ପୋଲିସ୍ ଡିପାର୍ଟମେଣ୍ଟରୁ! ଆଉ କିଏ ଆସିବ? (ସୁହାସିନୀ ଫେରି ଆସିଲେ)

ସୁହାସିନୀ ହଇରେ ଏ ପୁଲିସି? ତୁ’ କେମିତି ଜାଣିବୁ ତ? ତାକୁ ପରା ମୁଁ ଦରୁଆନ କରି ରଖିଥିଲି! କାଇଁକି ରଖିଥିଲି? ତାଂକ ମୁଣ୍ଡ ଭିତରକୁ ବର୍ଷାଦିନିଆ ମହାନଦୀ ପାଣି ଭଳିଆ ବହୁତ ଆଇଡିଆ ପଶିଯାନ୍ତି! ବହୁତ କ୍ୟାରେକ୍ଟର ପଶି ଯାନ୍ତି – ଭିଡ଼ ସଂଭାଳିବା ପାଇଁ ଦରଓ୍ୱାନଟେ ଆମର ଦରକାର ଥିଲା।

ପଟ୍‌ଲୁ କିଂତୁ ସିଏ ମଲେ କାହିଁକି? ଏ ଦରଓ୍ୱାନ୍ ଥାଉ ଥାଉ ସିଏ ମଡର ହେଲେ କେମିତି?

ଡୋନା ସାର୍ ଜମାରୁ ମରିନାହାନ୍ତି। ଶୋଇ ଶୋଇ ନିଦରେ ଆମର ଲାଷ୍ଟ ସିନ୍‌ଟା ଲେଖୁଛଂତି। ସରି ନାଇଁ... ସରିନାଇଁ ବୋଧେ...

(ହଠାତ୍ ପ୍ରବେଶ କଲେ ଚୈତନ୍ୟ ବାବୁ । ହାତରେ ମଦ ବୋତଲ)

ମ୍ୟାନେଜର : ଏକଦମ୍ ଠିକ୍ କହୁଚି ଡୋନା । ଡୋନାକୁ କଣ ବୋଲି ପାଇଲେ ଆପଣ ? ବଂଗ ବିହାର ଓଡ଼ିଶାର ଏକମାତ୍ର ସୁପରହିଟ୍ ହିରୋଇନ ! ଡୋନା ସାମଲ ! ଡୁଏଟ୍ ବି ନାଚିବ ।

ଡୋନା ଚଇତନ ଭାଇ ମୋର ଟ୍ୟାଲେଣ୍ଟ୍ ବିଷୟରେ ସବୁ ଜାଣିଛଂତି । ମୁଁ ବି ତାଂକ ଟ୍ୟାଲେଣ୍ଟ୍ ଦେଖିଚି...

ଚୈତନ୍ୟ (ଡୋନା କାଂଧରେ ହାତ ପକେଇ) କିଛି ଜାଣିବିନି । ଆଗ କହ ଏ ବର୍ଷ ଆମର ବିନ୍ଦାସ୍ ଗଣନାଟ୍ୟରେ ଜଏନ କରିବୁକି ନାଇଁ ?

ଡୋନା କରିବି ଯେ ଆଗ ସାର୍‌ଙ୍କ କଥା ବୁଝ !

ଚୈତନ୍ୟ ସାର୍‌ଙ୍କର କଣ ହେଇଚି ?

ଡୋନା ଶୋଇଛଂତି ଯେ ଶୋଇଛଂତି, ଉଠୁ ନାହାନ୍ତି ।

ଚୈତନ୍ୟ କ'ଣ ହେଲା ସାରଙ୍କର ? ମ୍ୟାଡାମ୍ ?

ସୁହାସିନୀ ମୁଁ ଆଉ ଅଧିକା କଣ କହିବି ମ୍ୟାନେଜର ବାବୁ ! ଡର ଲାଗୁଚି... କାଳେ ସିଏ ସବୁଦିନ ପାଇଁ ଏମିତି ଶୋଇପଡ଼ିବେନିତ ?

ଚୈତନ୍ୟ ଜମାରୁ ନୁହେଁ ମ୍ୟାଡାମ । ଆପଣମାନେ ଦୟାକରି ଟିକିଏ ଭିତରକୁ ଯାଆନ୍ତୁ... ଦୁଇ ମିନିଟ ପାଇଁ ମୁଁ ସାର୍‌ଙ୍କୁ ଉଠେଇ ଦେବାର ବ୍ୟବସ୍ଥା କରୁଚି ।

ଦରୱାନ ସାରଙ୍କ କଣ ହେଲା ଆମେ ସେ ବିଷୟରେ ଇନ୍‌ଭେଷ୍ଟିଗେଶନ୍ କରୁଛୁ । ଆମେ ବି ଯିବୁ ?

ଚୈତନ୍ୟ ଦୁଇମିନିଟ୍ ସାର । ଏ ନାଟ୍ୟକାର ସାର୍‌ମାନଂକର ନାଡ଼ି ନକ୍ଷତ୍ର

ଚିହ୍ନି ଚିହ୍ନି ବୁଢ଼ା ହେଇଗଲିଣି ସାର୍ । ଚୁଟିମାନେ ପାଚିଗଲେଣି !

ପତ୍ଲୁ ଠିକ୍ ଅଛି ! ଆ' – ଯାହା ଦେଖିଲେ, ଭିତରେ ଗୋଟେ ରିପୋର୍ଟଟେ ଲେଖିବା । ମାଡାମ୍ ଭିତରେ ଟେବୁଲ ଚୌକି ଅଛି ?

ସୁହାସିନୀ ଆସନ୍ତୁ – ଅଛି । (ମୋଟୁ ଓ ପତ୍ଲୁଙ୍କୁ ନେଇ ଚାଲିଗଲେ)

ଡୋନା ମୁଁ ବି ଯିବି ?

ଚୈତନ୍ୟ ନାଇଁ! ତୁ' ରହ! (ପାଖକୁ ଯାଇ) ସାର୍... ସାର୍! (ବୋତଲ ଖୋଲିଲେ) (ଦି ଜଣ ଯାକ ନଇଁ ପଡ଼ିଲେ ଶୋଇଥିବା ନାଟ୍ୟକାର ପାଖରେ)ସାର୍... ସାର୍... ଏଇ ଟିକିଏ ଗଂଗା ପାଣି ନିଅନ୍ତୁ...ଯଦି ଆମକୁ ସବୁଦିନ ପାଇଁ ଛାଡ଼ି ଦେବେ ଯାଆନ୍ତୁ... କିଂତୁ ଏଇଥିରୁ ଗଂଗାପାଣି ଟିକିଏ ପିଇଦେଇ ଯାଆନ୍ତୁ । (ନାଟ୍ୟକାର ମଦ ପିଇଲେ ଓ ଟିକିଏ ପରେ ଚେଂଗା ହେଇ ଉଠି ବସିଲେ ।)

ଚୈତନ୍ୟ ଜୟକଳା ! ସାର୍ ଆଖି ମିଟ୍‌ମିଟ୍ କରୁଛଂତି !

ଡୋନା ଜୟକଳା ! ଫେରି ଆସୁଛଂତି ସାର !

ଚୈତନ୍ୟ ବିନ୍ଦାସ ଗଣନାଟ୍ୟ ଜିନ୍ଦାବାଦ ! !

ଡୋନା ଜିନ୍ଦାବାଦ ! !

(ଦୁହେଁ ନାଚିଲେ ଓ ହୋ' ହଲ୍ଲା କଲେ । ନାଟ୍ୟକାର ମଧ୍ୟ ଉଠିଲେ, ନାଚିଲେ । ଏ ପାଟିତୁଣ୍ଡ ଶୁଣି ସମସ୍ତେ ଚାଲି ଆସିଲେ । ସୁହାସିନୀ ପାଖକୁ ଗଲେ ଓ ଛୁଇଁବା ପାଇଁ ହାତ ବଢ଼େଇଲେ । ତାପରେ ପାରା ଅଡ଼େଇଲା ପରି)

ସୁହାସିନୀ ହାସ୍ ! ହାସ୍ (ତାଳି ମାରିଲେ) ତମେ ସତରେ ମୋ' ସ୍ୱାମୀଟି ? ନା...

ନାଟ୍ୟକାର ମୁଁ ଗୋଟେ ଭୂତ!

ସୁହାସିନୀ ଏଁ! ମ୍ୟାନେଜର ବାବୁ! ଇଏ କ'ଣ କହୁଛଂତି? (ଦର୍ଶନମାନଂକୁ) ଏମା'! ଘର ଭିତରେ ଗୋଟେ ଭୂତ କୁଆଡୁ ଆଇଲା। ମୁଁ ଓଝା ପାଖକୁ ଯାଉଚି (ଚାଲିଗଲେ)

ଚୈତନ୍ୟ ସାର୍ ନିଅନ୍ତୁ! ଆଉ ଟିକେ ନିଅନ୍ତୁ। ନିଦଟା ଆହୁରି ଛାଡ଼ିନି?

ନାଟ୍ୟକାର ପ୍ରକୃତରେ ମୁଁ ମରିଯାଇଥିଲି...

ଡୋନା ମଲେ କେତେବେଳେ? ଏଇତ ବଂଚିଛଂତି।

ନାଟ୍ୟକାର ମୋର ସୃଜନ ଉପତ୍ୟକା ଅପନ୍ତରା ହେଇଯାଇଥିଲା, କେରାଏ ଦୁବଘାସ ବି ଉଠୁନଥିଲା...

ଚୈତନ୍ୟ କେମିତି ହେଲା ସାର୍? ଏସବୁ କେମିତି ହେଲା?

ନାଟ୍ୟକାର ତଂତ୍ର! ତଂତ୍ର ମାଡ଼ ହଉଥିଲା... ରାତି ପାହି ନଥିବ... ମୋ' ମୁଣ୍ଡର ଫରୁଆରେ ଠିକ୍‌ସେ ଆଲୁଅ ଜଳିନଥିବ... ପାଟଣାଗଡ଼ରୁ ଗୋଟେ ତାଂତ୍ରିକ ଆସି ମୋ' ବାଟ ଓଗାଳିବ... କୋରାପୁଟରୁ ଗୋଟେ ଗୁଣିଆ ଆସି ମୋ' ମୁଣ୍ଡକୁ ଚାଟିବ!

ଡୋନା ଏଗୁଡ଼ା ଆପଣଙ୍କର ମନର ବିକାର ସାର୍!

ଚୈତନ୍ୟ ଡୋନା ଠିକ୍ କହୁଚି। ଚାଲନ୍ତୁ... ଗାଡ଼ିଟା ବାହାର କରନ୍ତୁ ଆମେ ଗୋଟେ ରାଉଣ୍ଡ ବୁଲି ଆସିବା ରାଜଧାନୀରେ...

ନାଟ୍ୟକାର ଏ ରାତିଟାରେ କୁଆଡ଼େ ବୁଲିବା? ପାଖାପାଖି ବାରଟା ବାଜିଲାଣି – ଆରେ କିଏ ଅଛ- ଗାଡ଼ିଟାକୁ ଠେଲି ଠେଲି ଆସ ଏ ପାଖକୁ ।

ଚୈତନ୍ୟ ଚାଲନ୍ତୁ... ଆମକୁ ବସ୍‌ଷ୍ଟାଣ୍ଡରେ ଛାଡିଦେଇ ଆପଣ ଯିବେ । ଯେମିତି ଅଂଧାର ହେବ, କାହାଣୀର ଜାଲ ବୁଣିବେ ।

(ସେମାନେ ଗଲେ । ଗାଡିରେ ବସିଲେ । ନାଟ୍ୟକାର ଗାଡ଼ି ଷ୍ଟାର୍ଟ କଲେ)

(ଅନ୍ଧାର)

(ସମସ୍ତେ ଫ୍ରିଜ୍ ହେଇଗଲେ । ଅଂଧାର)

୦୦୦



ରମେଶ ପ୍ରସାଦ ପାଣିଗ୍ରହୀ (୧୯୪୪) ହେଉଛନ୍ତି ଉତ୍ତର ଆଧୁନିକ ମାର୍କିନ ନାଟକ ଉପରେ ପି.ଏଚ.ଡ଼ି କରିଥିବା ଭାରତର ପ୍ରଥମ ନାଟ୍ୟକାର। ୮୫ ଖଣ୍ଡ ନାଟକ, ଅନାଟକ, ଅଣୁ ନାଟକ ଓ ଆଣ୍ଟି ପ୍ଲେ ଲେଖି ସେ ଓଡିଆ ଜାତିର ନାଟ୍ୟ ସଂସ୍କୃତିକୁ ସମୃଦ୍ଧ କରିଛନ୍ତି। ମଣିଷର ଅନ୍ତର୍ନିହିତ ବେଦନା ଓ ଆବେଗକୁ ନେଇ ଲେଖିବା ଛଡା ଆଂଗିକର ନୂତନତା ଓ ଚମତ୍କାରିତା ଉପରେ ସେ ଅଧିକ ଗୁରୁତ୍ୱ ଦେଇଥାନ୍ତି । କେତେବେଳେ ସେ ବିଦଗ୍ଧ ପାଠକଙ୍କୁ ମୁଗ୍ଧ କରନ୍ତି ତ ଆଉ କେତେବେଳେ ବୌଦ୍ଧିକତାର ଆଲମ୍ବନ ବିଭାବରେ ବାନ୍ଧି ରଖନ୍ତି। ତାଙ୍କର ସୃଜନ ବ୍ୟକ୍ତିସତ୍ତା ବହୁସ୍ୱରିତ। ସିନେମାରେ ସଂଳାପ ଲେଖିବାଠାରୁ ଆରମ୍ଭ କରି ଲୋକଜୀବନର ବ୍ୟାପକ ବିସ୍ତୃତପଟକୁ ନେଇ ସେ ଲେଖି ବସନ୍ତି ଅନେକ ଯାତ୍ରାନାଟକ। ଏହି ନାଟକ (ଯେସନେ କୀଟ ଉର୍ଣ୍ଣନାଭି) ତାଙ୍କ ପରିଭାଷାରେ ମେଟାଥିଏଟର୍...

ଅନିନ୍ଦିତା ପଣିଗ୍ରାହୀ

Jesane Kita Urnanabhi
Play by-
Ramesh Prasad Panigrahi
Events Publications. 2017
4555 VSS Nagar,
Bhubaneswar- 751007

₹ 110

ISBN 978-81-908070-3-6

